

ଲଞ୍ଜିଗଡ଼ାଧୀଶ୍ୱର

U. S. Press, Cuttack. ଶ୍ରୀ ଶ୍ରୀ ମାହେଶ୍ୱରୀପ୍ରସାଦ ଦେବ ।

## ନିମନ୍ତ୍ରଣ ।



ଅସ ଦେବ, କାବ୍ୟପ୍ରିୟ ଲଞ୍ଜିଗଡ଼ନାଥ,
ମଣୀ-ଖଣି-ନାଗବଂଶ-ବରକାନ୍ତ-ମଣି,
ଉତ୍କଳ-ହିମାଦ୍ରି-ଗିରି ନିୟାମବିହାରୀ, *
ପୁଣ୍ୟଶ୍ଳୋକ ମାହେଶ୍ୱରୀ ପ୍ରସାଦ ରାଜର୍ଷି,
ଜାତୀୟ ଗୌରବଚୂଡ଼ା ଜାତିପୂଜାଜନ,
ବସ ସାରସ୍ୱତ ପୀଠେ,—ପାବନ ସୁତୀର୍ଥ ।
ଉପଯୁକ୍ତ ଶ୍ରୋତା ତୁମ୍ଭେ ମାତୃ ସାହିତ୍ୟର,
ତେଣୁ ନିମନ୍ତ୍ରିଲି ଯୁକ୍ତକରେ, ସାନୁନୟେ,—
ଶ୍ରବଣାର୍ଥେ ଏ ନୀରସ ପ୍ରଣୟ-ଚରିତ ।
ଏ ଫଳଟି, ନୃପ ! ତବ ଉଦ୍ୟାନ-ବୃକ୍ଷର,
ହେଲେହେଁ ବିସ୍ୱାଦ, ତାହା ଗ୍ରହିବ ସାଗ୍ରହେ,
ଏହି ଆଶା ଅଗ୍ରବର୍ତ୍ତୀ କରିଛି ମୋ ପ୍ରାଣେ ।
ଜାଣ ତୁମ୍ଭେ, ଦୈନ୍ୟ-ଧନେ ମହାଧନୀ ମୁହିଁ,
କାହୁଁ ବା ପାଇବି ରାଜଯୋଗ୍ୟ ସୁଆସନ,
ଭାବୁଛି ଏସନ ମନେ, ଏମନ୍ତ ସମୟେ
ହୋଇ ଆବିର୍ଭୂତା ଦେବୀ କଳ୍ପନା-ସୁନ୍ଦରୀ,

---

* ଲାଞ୍ଜିଗଡ଼ସ୍ଥ ନିୟାମଗିରି ରାଜନୈତିକ ଉତ୍କଳର ସର୍ବୋଚ୍ଚ ପର୍ବତ । ଏହାର ଉଚ୍ଚତା ୪୯୭୬ଫୁଟ ।

କହିଲେ ମଧୁରେ, "ବତ୍ସ, କିପାଁ ତୁ ଅଧୀର,
ଚିରସହାୟ ମୁଁ ତୋର, ନ କର ଭାବନା,
କି ରତ୍ନ ଅଭାବ ମୋର ଅକ୍ଷୟ ଭଣ୍ଡାରେ ।
ଇଚ୍ଛିଲେ ମୁଁ ସୃଜିପାରେଁ ମୁହୂର୍ତ୍ତ ମଧ୍ୟରେ
କୋଟି ସ୍ୱର୍ଣ୍ଣସିଂହାସନ, କୋଟି ରାଜହର୍ମ୍ମ୍ୟ,—
ସୁନ୍ଦର ରାଜ୍ୟର ରମ୍ୟ ମଣି-ମୁକ୍ତା-ଖଚି ।"
କଥା ଅନୁରୂପ କାର୍ଯ୍ୟ କଲେ ସୁଧା ଦେବୀ,
ତହିଁ ମୁଁ ସାହସ ଲଭି କଲି ଆମନ୍ତ୍ରଣ,
କି ଅଛି ସମ୍ବଳ ମୋର କଳ୍ପନା ବ୍ୟତୀତ ।
ହେ ସାହିତ୍ୟରସଗ୍ରାହୀ, ସାରସ୍ୱତ ଯୋଗୀ
ଉନ୍ନତ ତୁମ୍ଭର ହୃଦ, ଉନ୍ନତ ଯେସନ
ତୁମ୍ଭ ତୁଙ୍ଗ ଯୋଗବେଦୀ—ମହେନ୍ଦ୍ରଶିଖରୀ,
କମଳାବିଳାସକୁଞ୍ଜ—କମଳା-କୁନ୍ତଳ* ।
ତୁମ୍ଭ ଦେବ ବ୍ୟବହାର, ନିର୍ମଳ ଶୀତଳ,
ଯେସନ ତୁମ୍ଭର ନିତ୍ୟ ସ୍ନାନ ତରଙ୍ଗିଣୀ
ଅନନ୍ତ କଲ୍ମଷହରା—ବଂଶଧାରା ନୀର † ।
ନରମଣି, ସତ୍ୟ ତୁମ୍ଭେ ନରଦେହଧାରୀ,

---

* ମହେନ୍ଦ୍ରଗିରିରେ ଉତ୍କୃଷ୍ଟ କମଳା ତୋଟା ଅଛି ।

† ବଂଶଧାରା ନଦୀ ମହେନ୍ଦ୍ରଗିରିରୁ ବାହାରି ଗଞ୍ଜାମ ଜିଲ୍ଲାର ଦକ୍ଷିଣ ଭାଗରେ ପ୍ରବାହିତ ହୋଇଅଛି ।

ମାନ୍ୟ ତବ ଶିର, ଯଶେ ଦେବଶିର ଦେବ ।
କହିଦେଲ୍ ପଦେ, ମାନ୍ୟ ହୁଏ ଭୃତ୍ୟ ଜାତ,
ନିଜର ପ୍ରଶସ୍ତି ବାଣୀ ହୁଏ କଣ୍ଟକଠୁ
ମହାଜନ କଣ୍ଠେ, ତାଙ୍କ ଶାଶ୍ୱତ ଧାରା ଏ,
ହୁଅନ୍ତି ବିରକ୍ତ ନିଜ, ହେ ନୃପ ଶ୍ରୀଛାମୁ;
ଆପଣା ସୁଗନ୍ଧ ଅପେ ନ ଘ୍ରାଣେ ସୁମନ ।
କିନ୍ତୁ ମୁଁ ଗାଇତ ନାହିଁ ବିଫଳ ପ୍ରଶଂସା,
ଅଥବା ବାଇତ ନାହିଁ ବ୍ୟର୍ଥ-ସ୍ତୁତି-ବୀଣା,
ତଥାପି ନିରସ୍ତ ହେଲ, ଗଣିଣ ଆଶଙ୍କା,
ବିଜେ ହୁଅ ଏବେ ଦେବ, କଳ୍ପ-ସିଂହାସନେ·
ମହାର୍ଘ-ମାଣିକ୍ୟ-ମଣ୍ଡି, ଶୁଣ ଏ ପତ୍ରିକା ।

ନରପୁର୍, ଭଦ୍ରଖ ।
୧୫।୫।୨୩

ଶ୍ରୀଛାମୁଙ୍କର
ଚରଣସ୍ନେହାନୁଗତ
ଶ୍ରୀ ଚନ୍ଦ୍ରାମଣି ମହାନ୍ତି ।

# ସୂଚୀପତ୍ର ।









## ପ୍ରଥମ ସର୍ଗ ।



( ବସନ୍ତ ପ୍ରତି ବସୁମତୀ । )

ଘେନାହେଉ ଋତୁରାଜ, ଦାନା ପ୍ରକୃତିର
ପ୍ରାଣର ପ୍ରଣୟ-ଅର୍ଘ୍ୟ, ପୁଣ୍ୟ ଆମନ୍ତ୍ରଣ,
ବିଶ୍ୱରାଜ-ଜେମା ମୁହିଁ ଅନନ୍ତବୈଭବା,
ମାଗେ ତୁବ ପଦମୂଳେ ଦଣ୍ଡା ଦାନା ପଣେ ।
ତବ ଦାନା ପ୍ରିୟବର, ମୋ ନୟନେ ହାୟ,
ଶ୍ମଶାନର ଭସ୍ମ ପ୍ରାୟ ସେ· ମହାବିଭବ,
ଛିଦେଇଁ ବସି ଦିବାଯାମୀ, କାହିଁକି ବିଧାତା
ସୃଜିଲା ଅପର ଋତୁ, ନ କଲା କାହିଁକି
ଚିରବସନ୍ତମୟୀ ମୋତେ, କି ପାପେ ବା ଶାପେ ।
କେଉଁ ସ୍ୱର୍ଣ୍ଣଧରା ଅବା କେଉଁଣ ମନ୍ତ୍ରରେ
ଭୁଲାଇ ତୁମ୍ଭଙ୍କୁ ରଖେ ଦଶ ମାସ କାଳ

ସାଧିବାକୁ ମୋ ସହିତ ସପତ୍ନୀବିବାଦ,
ଅସପତ୍ନ ଅଭିଧା ମୋ ହର ମାୟାବଳେ ।
ଭୁଲି ଏ ଦାସୀକି ତୁମ୍ଭେ ପ୍ରିୟ ରଘୁବର,
କେଉଁ ସମୁଜ୍ଜ୍ୱଳ ରାଜ୍ୟ କର ଉଜ୍ଜ୍ୱଳିତ ।
ମୋ ପ୍ରାଣ-କଳ୍ପନାଧିକ—ଆତୁରତାବୋଲା,
ନ ଶୁଭେ କି ତହିଁ, ସେ କି ନିର୍ବାତ ପ୍ରଦେଶ ?
କି କହିବ ପ୍ରାଣାଧିକ, ଅଧିକ ମୁଁ ଅବା,
ତୁମ୍ଭ ବିନା ଯେ ଯନ୍ତ୍ରଣା ଭୁଞ୍ଜୁଛି ମୋ ଆତ୍ମା,
ଦେଖାନ୍ତ ସମୀପେ ଥିଲେ ଫେଡ଼ ହୃଦୟର
ନିଭୃତ ନିକେତନର ବ୍ୟଥାବଦ୍ଧ ଦ୍ୱାର,
ଦେଖନ୍ତ ତହିଁରେ ତୁମ୍ଭେ କେତେ ଭାବ, ଚିନ୍ତା,
ଅଛି ଅନୁସ୍ୟୂତ, ଯଥା ଚନ୍ଦ୍ରାତପେ ମୂର୍ତ୍ତି ।
ତୁମ୍ଭ ବିନା ମୋର ମନ ହେଉ ନାହିଁ ମୋର,
ବଡ଼ ଅବାଧ୍ୟ ସେ, କେବେ ନ ଦେନେ ସାନ୍ତ୍ୱନା,
ଉଡ଼ି ବୁଲେ ମହା ଶୂନ୍ୟେ ଅଜ୍ଞାତ ରାଜ୍ୟରେ ।
ବାନ୍ଧେ ବହୁ ଆଶା ମନେ, ମାତ୍ର ପ୍ରତିଦିନ
ନୂତନ ଭାବରେ ହୁଏଁ ନିରାଶ ସର୍ବଥା,
ନ ଧରେ ଆଶାର ରଙ୍ଗ ହତାଶ ହୃଦୟେ ।
ଦୁଃଖ ତାପ ଅଶ୍ରୁ ଶୋକ ଚିରସଖା ମୋର ।
ଧରଣୀ ନୟନମଣି ତୁମ୍ଭେ ରଘୁମଣି,

ଧରଣୀ-ହୃଦୟ-ସରଃ-ସ୍ୱର୍ଣ୍ଣ-ସରସିଜ,
ଧରଣୀର ଆଶା-ନଭେ ଶରଚ୍ଛପକ୍ଷଶଶୀ,
କି ଅଦ୍ଭୁତ ଗୌର ତୁମ୍ଭେ, ଗୌରବଇ ମୋ ମନ
ସ୍ୱଳ୍ପକ୍ଷଣେ, ଲୁଚି ଯାଇ ନନ୍ଦନକାନନେ,
ସାର୍ଥକ କରଣ ଗୌରବ ବସନ୍ତ ଉପାଧି ।
କେଉଁ ଗୁଣେ ବଡ଼ ଭଲ ମୋ ତହୁଁ ନନ୍ଦନ,
ବିଶେଷତ୍ୱ ପାରିଜାତ ତାର, କିନ୍ତୁ ତାହା
ମୋ ସକାଶେ ତୁଚ୍ଛ । ଦେବ, ନ ଜାଣ କି ତୁମ୍ଭେ
କୋଟି ରତ୍ନ ପାରିଜାତ ରହିଛି ବିକ୍ଷିପ୍ତ
ତବାଞ୍ଛିତା ଏ ଧରାର ପ୍ରତି ଲୋମକୂପେ ।

ନାମ ମୋର ଗନ୍ଧବତୀ, ବଳେ କି ମୋ ଗନ୍ଧୁଁ
ହେ ନନ୍ଦନବନ୍ଧୁ, ସ୍ୱର୍ଗ ପାରିଜାତ ଗନ୍ଧ ?
ବାସ୍ତବ ମୁଁ, ପାରିଜାତ ଆକାଶକୁସୁମ,
ନ ଧରେ ସେ ଫୁଲ ମୁହିଁ, ନୁହେ ତାହା ବିଧି,
ଫୁଟେ କି ବାସ୍ତବ-ବୃନ୍ତେ ଆକାଶକୁସୁମ ?
ମୁଁ ଅନନ୍ତ, ମାତ୍ର ସାନ୍ତ ସେ ନନ୍ଦନବନ,
ଲଭିବ ସସୀମ କାହିଁ ଅସୀମ ତୁଳନା,
ତେବେ କେଉଁ ଗୁଣେ ଅବା ରଖେ ସେ ଭୁଲାଇ
ତୁମ୍ଭଙ୍କୁ ? ବୁଝିଲି ଏବେ, ନୁହେ ସେ ମୋଠାରୁ
ଗୁଣେ ବଡ଼, ମାତ୍ର ବଡ଼ ଭାଗ୍ୟେ, ଯେଣୁ ମେନ୍ଦ୍ର

ନେଇଛି ଛଡ଼ାଇ ବଳେ ସୌଭାଗ୍ୟ ମୋହର,
ହୋଇଛି ସେ ଭାଗ୍ୟଧର ମୋହୋ ଭାଗ୍ୟ ଯୋଗୁଁ ।

ତୁମ୍ଭ ଗଲ ପରେ ଖରେ ଆସିଲା ନିଦାଘ
ଋତୁବାଘ, ଦେଖି ତାକୁ ତୁମ୍ଭ ସଖା ସଖୀ
ଗଲେ ଛାଡ଼ି ମୋତେ ସର୍ବେ, ତବ ପ୍ରିୟ ପିକ—
ବିପଞ୍ଚି ପଞ୍ଚମ ସ୍ୱରେ କରେ ଯେନ୍ତୁ ଧିକ,
ମଳୟ ଶ୍ୱସନ—ପୂର୍ବେ ବହୁଥିଲା ଯେନ୍ତୁ
ସୁରଭି ପ୍ରଶ୍ୱାସ ତବ; ରସାଲମଞ୍ଜରୀ—
ଦର୍ଶକ ନୟନମନ-ବିହଙ୍ଗ-ପଞ୍ଜରୀ,
ତବ ସହଚରୀ; ଶୋଭାଲକ୍ଷ୍ମୀ, ପୁଷ୍ପଲକ୍ଷ୍ମୀ;
ପଳାଇଲେ କେଏ କାହିଁ ଛନ୍ଦଭଙ୍ଗ ଦେଇ,
ପଳାନ୍ତି ଯେସନ ଦେଖି ଅରଣ୍ୟବାସିଏ
ମହାବଳୀ ମହାବଳେ—ଜୀବକୁଳ-କାଳ,
କିମ୍ବା ଯଥା ବ୍ୟାଧେ ହେରି ତ୍ରାସେ ମୃଗଯୂଥ ।
ବନ-ସର-ଶତଦଳ, ସଂଯତ ସରଳ,
ଲୁଚନ୍ତି କାନନକୁଞ୍ଜେ ପଳାଇ ସତ୍ୱର ।
ସେ ସୁବର୍ଣ୍ଣ ମଣିବନ୍ଧ, ସେ ଲତାମୁକୁଟ,
ପଲ୍ଲବ-ପ୍ରବାଳ-ମାଳ, ଯେ ମହାଭୂଷଣେ
ସଜାଇଣ ଥିଲ ମୋତେ ସାଦରେ ସ୍ୱକରେ;

ଛଡ଼ାଇ ନେଲା ତା କ୍ରୂର ନିଦାଘ ପିଶାଚ,
ସେ ମହିମା ସେ ବିଭବ ହରିଲା ସେ ଖଣ୍ଡ ।
ଯେଣ୍ଡାବାଳେ ଖୋଷି ଫୁଲ ନାଗର ପରାଏ
ହସୁଥିଲା ଯେ ପାଦପ — ଲତାନାଥ, ହାୟ,
ନିଦାଘର କ୍ରୋଧାନଳେ ଗଲାକ ସେ ଜଳ,
ହରନେତ୍ରାନଳେ ଯଥା ପୁଷ୍ପଧନୁଷ୍ପାଣି
ପୁଷ୍ପଧନ୍ୱା, ବଣଶୋଭା-ସାମ୍ରାଜ୍ୟ-ସମ୍ରାଟ,
ତରୁଣ-ତରୁଣୀ-ହୃଦ-ଅବ୍ୟର୍ଥ-ସନ୍ଧାନୀ ।
ରଶ୍ମିରଥେ ରଶ୍ମିନାଥ ଭ୍ରମିଲେ ଗଗନେ
ଦୁର୍ଜୟ ବିକ୍ରମେ, ଅହୋ, କି ପ୍ରଚଣ୍ଡ ତେଜ,
ମନେ ହୁଏ ଜ୍ୟୋତିର୍ମୟୀ ଜନନୀ ତାଙ୍କର
ବଢ଼ାଇଥିଲେ ବା ତାଙ୍କୁ ସିଂହୀ ଦୁଗ୍ଧପାନେ ।
ଅନଳଦୃଷ୍ଟିରେ ଉଭ ଗୃହିଁଲେ ସଦ୍ୱେପେ,
ବିନ୍ଧିଲା ସେ ଦୃଷ୍ଟି ମୋର ଦେହେ ମୃତ୍ୟୁବାଣ,
ପ୍ରତେ ହେଲା ଯେହ୍ନେ, ମୁଠା ମୁଠା ଅଗ୍ନିଗୁଣ୍ଡି
ଦେଉଛି କେହି ବା ଛାଟି ଚୌଦିଗେ ସତତ ।
ଧୂଳିକଣା ଗଲା କଣା ସ୍ଫୁଲିଙ୍ଗ ପରାଏ
ନ ପାରି ସନ୍ତରି ପକ୍ଷୀ—ବନବିତାନକେ
ରଶ୍ମି-ସାଗରର ରୁଦ୍ର ଅନଳ ତରଙ୍ଗେ
ଲୁଚିଲେ ପାଦପକ୍ରୋଡ଼େ, ପତ୍ରଅନ୍ତରାଳେ ।

ଅନନ୍ତଯୌବନା ମୁହିଁ, କର ଦେଲ ଦୁଷ୍ଟ
ଅକାଳ ଜରଟା ମୋତେ, ଶୋଷି ରକ୍ତ ଦେହୁଁ,
ଯଥା ଉତ୍ତମର୍ଣ୍ଣ, ଶୋଷେ କଳନ୍ତର-ରକ୍ତ
ଅଧମର୍ଣ୍ଣ ପିଣ୍ଡୁ, ଶରଶୋଷଣ-ନିପୁଣ ।
କେତେ ବଖାଣିବି ପୋଡ଼ା ଦୁଃଖର କାହାଣୀ,
ଦର୍ପନେ ଦହେ ରବି, ସନ୍ଧେ ଦାବାନଳ ଦହେ
ମୋ ବନ-କୁନ୍ତଳ, ଖେଳେ ଅବହେଳେ ଅବା
ବନେ ମଣିକୁନ୍ତଳା ଅନଳଫଣିନୀ,
କମ୍ଭା ଖେଳେ ଘନକୋଳେ ଘନ-ବିନୋଦିନୀ
ସୌଦାମିନୀ ଘନକାଳେ, ତପ୍ତହେମହାସୀ ।

ଦେଖିଲି ସ୍ୱପନେ ଦିନେ ପୁରୁଷରତନ,
ପୁଷ୍ପର ପିନ୍ଧୁଳୀ, ପୁଷ୍ପ-ଭୂଷଣେ ଭୂଷିତ,
ପୁଷ୍ପ ପରିଚ୍ଛଦ, ପୁଷ୍ପ ପ୍ରହରଣଧାରୀ,
ରସାଳ ବକୁଳ ଚୂଡ଼ା ବସିଛି ମସ୍ତକେ,
ଧନୁର ତାହାର ଫୁଲତୂଣ, ପୂର୍ଣ୍ଣ ତାହା
କେଶର-କୁସୁମଶରେ, ଅଗସ୍ତି କୁସୁମ
ଫୁଲଧନୁ, ଗୁଣ ତହିଁ ଶିଳୀମୁଖପନ୍ତି ।
ସେ ପୁରୁଷ କର୍ଣ୍ଣମୂଳେ ଦେଇଛି ପିନ୍ଧାଇ
କାସଙ୍ଗ ପ୍ରବାଳଖଚୀ ହୀରକ କୁଣ୍ଡଳ,

ସୁନାଗି ସୁବର୍ଣ୍ଣହାର ଲମ୍ବାଇଛୁ ବକ୍ଷେ ।
ଫୁଟିଅଛି କେତେ ଫୁଲ ଚଉପାଶେ ତାର,
ଫୁଟିଛି ସେବତୀ, ଗଢ଼ି ପ୍ରତିରୂପ ଯାର
ସୁବର୍ଣ୍ଣେ ସୁନ୍ଦରୀକୁଳ ଖୋଷନ୍ତି ଖୋସାରେ ।
କାହିଁ କର୍ଣ୍ଣିକାର କତ ବନସ୍ପତି କର୍ଣ୍ଣେ
ପିନ୍ଧାଇଛି ସ୍ୱର୍ଣ୍ଣଚମ୍ପା, କାହିଁ ବା ମନ୍ଦାର
ଅମନ୍ଦ ସୁନ୍ଦର ତନୁ ସିନ୍ଦୂରରଞ୍ଜିତ—
ଦେଖାଇ ଦୋହଲୁଛି ଗର୍ବେ ଚୌଦିଗଂ ଉଜ୍ଜ୍ୱଳ ।
କାହିଁ ଚୁରଅନା ହୋଇ କୁସୁମେ ଚୂରତ
ସମରୂପ ପୁନ୍ନାଗକୁ କରେ ପରିହାସ, *
ଧାଇଁଛନ୍ତି ଚଉପାଶୁଁ ଅଳିଏ ସଙ୍ଗରେ
ପୁଷ୍ପ ପ୍ରତି, ପ୍ରତେ ହୁଏ ରାଜନ୍ୟସମାଜ
ଧାବନ୍ତ କି ସ୍ୱୟମ୍ବରେ କନ୍ୟାଲାଭ ଆଶେ ।
ଏହିପରି କେତେ ଫୁଲ ଫୁଟିଛି ଗହଳେ
ସେ ପୁରୁଷ ଦେବ ପାର୍ଶ୍ୱେ, ପୁରତେ, ପଶ୍ଚାତେ,
ତାହା ପୁଷ୍ପହାସେ ମିଶି କୁସୁମର ହାସ
ଦିଶନ୍ତି ଉଜ୍ଜ୍ୱଳ ଦେବ ଦେବଙ୍କ ପ୍ରଭାରେ ।
ଜଏ ସେ ପୁରୁଷମଣି ଉପସ୍ୱର ପ୍ରାୟ,

* ଚୁରଅନା ଓ ପୁନ୍ନାଗ ପୁଷ୍ପର ବର୍ଣ୍ଣ, ଗଠନ ଏବଂ ସୁବାସ ଏକା ଭଳି ।

ପାରିବ କି କହି ? ତୁମ୍ଭ କହିବା ଆଗରୁ
କହୁଛି ମୁଁ, ସେ ପୁରୁଷ ଯାହା ଧରଣୀର
ହୃଦୟ-ଚନ୍ଦନ, ତାର ଧ୍ୟାନର ଦେବତା,
ଏଥିରେ ଯଦ୍ୟପି ତୁମ୍ଭେ ନ ପାରିବ ଚିହ୍ନି,
ଚିହ୍ନ ତେବେ ଚିହ୍ନାଉଛି, ତୁମ୍ଭେ ସେ ପୁରୁଷ ।
ଭାଙ୍ଗିଗଲା ସ୍ୱପ୍ନ, ହାୟ, କାହିଁକି ବା ବହି
ସୁକଲେ ସ୍ୱପନେ, କରି ଅଲ୍ପାୟୁ ସଂସାରେ;
ସତ୍ୟହୀନ ହେଲେ ସୁଦ୍ଧା ସୁଖ-ସ୍ୱପ୍ନ ମିଠା ।
ମଧୁର ବ୍ୟର୍ଥତା ସୁଦ୍ଧା ଶୁଭ ସମ୍ବାଦର ।
କେତେ ଯେ ଦୁଃଖିତା ମୁହିଁ ତୁମ୍ଭର ଅଭାବେ;
କି ଲେଖିବ ପ୍ରାଣାଧିକ ଏ କ୍ଷୁଦ୍ର ପତ୍ରୀରେ;
ଅସ୍ତୋନ୍ମୁଖ ରକ୍ତ ରବି ଅସ୍ତାଚଳଚୂଳେ
ଚୁହାଁନ୍ତି ଯେ କାଳେ ଫେରି କମଳିନୀ ପ୍ରତି,
ଫୁଲକୁଳ-ସୁନ୍ଦରୀ, ସଙ୍ଗିନୀ ତାଙ୍କର,
ସେ କାଳେ ତୁମ୍ଭଙ୍କୁ ସ୍ମରି ହୁଏ ମୁଁ ବ୍ୟଥିତ ।
ଅଳକ୍ଷଣେ ଦେଖି ପୁଣି ପ୍ରେମିକ ଚକୋର
ଉଡ଼ିଯାଏ ଚୁହଁ ଚୁହିଁ ପ୍ରେୟସୀ ବଦନ
ଦୃଷ୍ଟାନ୍ତରେ, ଯାପିବାକୁ ବିଚ୍ଛେଦରଜନୀ,
ଭାବେଁ ହାୟ, ଯିବାବେଳେ ତୁମ୍ଭେ ଏହିପରି
ବାଟେ ଫେରି ଚୁହିଁ ଚୁହିଁ ଯାଇଥିବ ମୋତେ,

ନ ଥିଲା ତେଣେ ମୋ ଦୃଷ୍ଟି ଅନ୍ତରାଳେ,
ତୁମ୍ଭ ବନ୍ଧ ଅନ୍ତରରେ ହୋଇ ବନ୍ଦିନୀ,
ଭୁଲିଲି ତୁମ୍ଭଙ୍କ, ଧିକ ଅକୃତଜ୍ଞା ମୁହିଁ !

ଆସିଲା ନିଦାଘଶେଷେ ଶୀତଳ ପ୍ରାବୃଟ,
ବର୍ଷି ମହୀମାବନ୍ତ, ବାରିଦ ବାହନେ ।
ଆଷାଢ଼ ପ୍ରଥମ ଦିନେ ମେଘ-ଦୂତଦ୍ୱାରା
ପେଷିଲା ବାରତା ଯକ୍ଷ ବିରହବ୍ୟାକୁଳେ
ପ୍ରିୟା ପାଶେ, ଦେଖି ତାହା ଇଚ୍ଛିଲି ପ୍ରେରିବ
ତବ କତି ଦୂତ, ମାତ୍ର ବୃଥା ଆଶା, ହାୟ,
ସେ ଦୁର୍ଯୋଗେ କାହାକୁ ବା ପେଷିବି, କେ ଯିବ,
କେବଣ ଅଜ୍ଞାତ ଦେଶେ ଖୋଜିବ ତୁମ୍ଭଙ୍କୁ,
ଭାବି ଭାବି ଅବଶେଷେ ହେଲି ମୁଁ ହତାଶ ।
ଧାଇଁଲେ ବାରିଦେ ସଦା ଗହନ ଗଗନେ
ଗରଜି ଭୈରବ ରବେ, ଗର୍ଜନ୍ତି ଯେସନ
ଦିଗ୍‌ଗଜେ ପ୍ରଳୟକାଳେ ବ୍ରହ୍ମାଣ୍ଡ କମ୍ପାଇ ।
ସେ ଶବଦେ ବଧିର ହୋଇ ଥରିଲା ଗଗନ,
ଥରିଲି ମୁଁ, ବାତେ ଯଥା ନବବଧୂ ରମ୍ଭା,
ବିଦାରି ବାରିଦ ବକ୍ଷ ଉଠିଲା ପ୍ରଜ୍ୱଳି
ମୁହୁର୍ମୁହୁ ସୌଦାମିନୀ, ଘନ-ପ୍ରଣୟିନୀ,

ବହେ କି ଅନଳନଦୀ, ଅଶୁଗା, ଅସ୍ଥାୟୀ ।
ହେଲା ସୃଷ୍ଟି ବଦ୍ୟୁରାଜ୍ୟ, ହେଲା ଦନ ଘଢ
ବଦ୍ୟୁଦ୍ଦିନ, ବଦ୍ୟୁରାଜି, ବର୍ଷିକାମୟ ।
ଦଣ୍ଡକେ ହେଲା ମୋ ମୁଣ୍ଡେ କୋଟି ବଜ୍ରପାତ,
ହେରି ମୋ ଦୁର୍ଦ୍ଦଶା ଖେଦେ କାନ୍ଦିଲା ଗଗନ,
କାନ୍ଦଲେ ମୋ ଗିରି ନଦୀ, କାନ୍ଦଲି ମୁଁ ଆର୍ତ୍ତେ ।
କେତେ ଯେ ଲୋତକ ଥିଲା ଆକାଶ ନୟନେ,
ହେବ ନାହିଁ କଳି, ଦେଇ ଅନର୍ଗଳ ଢାଳି
ତାହା, କଲା ଅଭିଷିକ୍ତ ମୋତେ ଅନୁକ୍ଷଣ ।
ଶ୍ରାବଣର ଧାରା ସହ ବର୍ଷିଲା ମୋ ଶିରେ
ବହୁ ଦୁଃଖ—ବହୁ ବ୍ୟଥା ବେଦନାର ଧାରା,
ତହିଁ ସଙ୍ଗେ ମୋ ନୟନୁ ବର୍ଷି ଅଶ୍ରୁଧାରା
ବହି ଶୈବଳିନୀରୂପେ, ହୋଇ ପୂର୍ଣ୍ଣଗର୍ଭ—
କୂଳଙ୍କଷା, ବୁଡ଼ାଏ ସେ ମୋତେ, ତହିଁ ଖେଦେ
କହେଁ ମୁଁ ଅଶ୍ରୁକୁ—କିଏ ପୋଛିବ ରେ ତୋତେ
ଦୀନ ଭାଗ୍ୟହୀନ, ହାୟ, କି ନିର୍ବୋଧ ତୁହି,
ଯେ ପୁଛନ୍ତା, ସେ ତ ଯାଇ ଦୂରେ—ବହୁଦୂରେ ।

ବଜ୍ର ସହ ବଦ୍ୟୁତର ଏ ବିବାହୋତ୍ସବ,
ଶୌର୍ଯ୍ୟ ସହ ସୌନ୍ଦର୍ଯ୍ୟର ଏ ମହାମିଳନ,
ବଡ଼ ପ୍ରୀତିପଦ ଦୃଶ୍ୟ ଭାବୁକ ନୟନେ,

ଶୌର୍ଯ୍ୟ ବିନା ସୁଷମାର ଉପଯୁକ୍ତ ବର,
ମାନ୍ଦ୍ର ମୋ ନୟନେ ବଷ୍ଟ, ଯେଣୁ ତୁମ୍ଭ ସହ
ମୋ ମିଳନ—ଯୋଗ୍ୟ ସହ ଶୋଭାର ମିଳନ ।
କେବେ ବା ପ୍ରବଳେ ବହି ଭୀମ ପ୍ରଭଞ୍ଜନ
କରେ ମୋତେ ବ୍ୟସ୍ତ, ଭୀତ, ତରୁବର୍ଗ ମୋର
ଭୟେ ହୋଇ ନତଶିର, ନମନ୍ତି ତା ପଦେ
ଯୁକ୍ତ କରେ, ମହାଭୟେ ମୁଦେଁ ମୁଁ ନୟନ ।
ଦଣେ ଯଥା ଉର୍ମିହୀନ ତମଃସିନ୍ଧୁ-ଛବି,
ବୁଡ଼ାଏ ସେ ଚରାଚରେ, ଗ୍ରାସେ ଅନନ୍ତରେ,
ନ ଥାଏ ତାହାର ଶିରେ କବରୀବେଷ୍ଟନେ
ତାରା-ମୋତିମାଳା, ସ୍ନିଗ୍ଧ ତରଳା ମଞ୍ଜୁଳା ।
ନ ଶୋଭେ ଯାମିନୀ ଭାଲେ ଯାମିନୀମୋହନ
ଇନ୍ଦୁ, କ୍ଷୀରସିନ୍ଧୁନିଧି, ଶିରୋମଣିରୂପେ,
ଇନ୍ଦୁପକ୍ଷ ସ୍ୱପ୍ନେ ଦଣେ ନାଇନ୍ଦୁ ଗଗନ ।
ମୋ ବନ ମୟୂରପୁଚ୍ଛ, ପ୍ରଜାପତି ପକ୍ଷ
ସ୍ମେର କର ବର୍ଣ୍ଣବିଭା, କେବେ ବା ଦିବସେ
ଉଦେ ହୁଏ ଇନ୍ଦ୍ରଧନୁ, ପ୍ରତେ ହୁଏ ଯେସନ୍ତେ
ବିଶ୍ୱକର୍ମା କର୍ମଶାଳୁ ଉଠି ରତ୍ନରେଣୁ
ଯାଉଛି ଗଗନ ଗର୍ଭେ ବନ୍ଧାବାରେ ଉଡ଼ି ।
ମୋ ବିଭବଗୌରବ ସେହୁ, ଦେଖିଲେ ତାହାକୁ

କମ୍ପି ଉଠେ ଅସ୍ଥି ମୋର ଅସମ୍ଭାଳ କ୍ରୋଧେ ।
ନିଦାଘ-ସନ୍ତପ୍ତ ଦେହ କରେ ସୁଶୀତଳ
ଅମୃତ-ସଲିଳ ସେକେ ବର୍ଷାକାଳ, ମାତ୍ର
ଅତି ଅନୁଗ୍ରହ ହୁଏ ଅନର୍ଥର ହେତୁ ।

ତଦନ୍ତେ ଶରତ ଆସି କଲା ରାଜପଣ
ଲମ୍ଭାଇ ମାନସଗାମୀ ରାଜହଂସାବଳୀ—
ଜୟମାଲ୍ୟ କଣ୍ଠେ, ଜଡ଼ିଲତା ହେମଛନ୍ଦ
ଟେକିଲ ସାୟାହ୍ନେ, ଦେଲା ହର୍ଷେ ପୁଷ୍ପାଞ୍ଜଳି
ଶରତବାଳିକା ସ୍ନିଗ୍ଧଗନ୍ଧା ଶେଫାଳିକା
ଶରତ ପଦୃରେ, ଭକ୍ତି ପ୍ରୀତି ଭେଟିରୂପେ ।
ରଚିଲ ବିଚ୍ଛେଦ ଛନ୍ଦେ ନଶୀହା ଗୃତକୀ
କି ଅଙ୍କିତ ମର୍ମବ୍ୟଥା—କରୁଣଗୀତିକା,
ମୁଖ ତାର ଅଛି ମ୍ଳାନ, ହାୟ, ମ୍ଳାନ ଯଥା
ଜନ୍ମଭୂମି ନିର୍ବାସିତ ଦୁର୍ଭାଗ୍ୟର ମୁଖ ।
ନିଜର ବିଚ୍ଛେଦ-ଅଶ୍ରୁ ଅର୍ପି ମୋ ନୟନେ
କାସାରେ ହସିଲା ବସି ଗର୍ବୋଚ୍ଚଲମୁଣେ
ସେତଗାର୍ଣ୍ଣୀ କୁମୁଦିନୀ, ହେରି ଚନ୍ଦ୍ରେ ନବେ
ଘନ-ରାହୁମୁକ୍ତ, ଫୁଟି ଉଠେ ମୁଖେ ତାର
ଆନନ୍ଦ-ଆଲୋକ, କେତେ ଅନୁରାଗବୋଳା

ସେ ଶୁଭ୍ର ଶୁହାଣି ଠାଣି, ହସେ ଚେଣେ ଇନ୍ଦୁ
ପ୍ରିୟା ମୁଖ ଚୁହିଁ, ଲଗେ ହାସ୍ୟବଦନମୟ ।
ମଧୁର ମିଳନଗୀତ ହୃଦୟ-ତନ୍ତ୍ରୀରେ
ଗୀତ ହୁଏ ବେଜନ୍ଙ୍କର, ସେ ଶୁଭ୍ର ଗୀତର
ନୀରବ ପ୍ରେମର ମୌନ ମଧୁର ରାଗିଣୀ,
ସେ ରହସ୍ୟ ଲୀଳା, ବେଜ ବୁଝନ୍ତି ବେଜର ।
ଶରଦଶାସନେ ତୁମେ ଶୁଣି ଅସେ ମୋର
ଲୋତକ-ପଙ୍କିଲ ବକ୍ଷ, ସୁଖଦ ଶାସନ
ତାର, ମାତ୍ର ତହିଁ ଥାଏ ବର୍ଷା ଉପସର୍ଗ,
ନୁହେ ତା ଶାସନ ତୁମ୍ଭ ଶାସନସଙ୍କାଶ
ସର୍ବାଙ୍ଗସୁନ୍ଦର, ପୂର୍ଣ୍ଣ, ତୁମ୍ଭର ଶାସନ
ନାତି ଉଷ୍ଣ ନାତି ଶୀତ, ଯଥା ତବ ସଖା
ମଳୟ ଅନିଳ, ପ୍ରାଣମନତୃପ୍ତିକର ।
ଉଲତର ପୂର୍ଣ୍ଣତା ସେ ଅର୍ପେ ମୋ ଆତ୍ମାକୁ ।
ଶରଦ ଶାସନନୀତି ଶୀତଳ, ନଶ୍ଚେଷ୍ଟ,
ନାହିଁ ତହିଁ ଶୌର୍ଯ୍ୟ, ଅତଃ ଅସମ୍ପୂର୍ଣ୍ଣ ତାହା,
କେବଳ ମଧୁର ନୀତି ନୁହେ ବାଞ୍ଛନୀୟ,
ଶୌର୍ଯ୍ୟଶୂନ୍ୟ ରାଜନୀତି ମେରୁଦଣ୍ଡହୀନ,
ନୁହେ ତହିଁ ଜୀବନର ନବଳ ସତେଜ,
ବଡ଼ ଉପାଦେୟ ଅମ୍ଳମିଶ୍ରିତ ମଧୁର,

ଥିବାରୁ ଅମ୍ଳତା ସିନା ପକ୍ୱରମ୍ଭାଫଳେ
ହୁଏ ତାହା ରୁଚିକର ପୁଷ୍ଟିତୁଷ୍ଟିପ୍ରଦ ।

ଶରଦନ୍ତେ ରାଜଲକ୍ଷ୍ମୀ ପୁଣ୍ୟ ଆମନ୍ତ୍ରଣେ
ଆସେ ହେମନ୍ତଋତୁ, ନବଅଧିରାଜରୂପେ ।
ପୁଷ୍ପାବୃତ ଅଶନ ସେ, ଶୀତଳ ପରଶେ
ଯୋଡ଼ିଦିଏ ପଦ୍ମବନ—ମୋର ବରଭୂଷା,
ତହୁଁ ଶ୍ଳେଷଛଳେ ତାକୁ କରେଁ ମୁଁ ଭର୍ତ୍ସନା—
ନୋହୁ ରେ ତୁଷାର ଅଛୁ ତୁହିନ ବର୍ବର ।
ବର୍ଷିଲା କାକର ରାଜେ, ବର୍ଷିଲା ତା ସହ
କାଶ ଜ୍ୱର ଲସମାଦ ବହୁବିଧ ବ୍ୟାଧି,
ହୁଲ୍‌ହୁଲିଆ ପବନେ ନ କାଟିଲା ଖରା,
ହିମ ବୃଷ୍ଟି, ତହିଁ ପରେ ପାହାନ୍ତିଆ ଶୀତେ
ସିକ୍ତଦେହେ, ଯାପେ ମୁହିଁ ରହି ଥର ଥର,
ଥରେ ଯଥା ଧୃଷ୍ଟ ଦୁଷ୍ଟ ଅବଧାନ ଦଣ୍ଡେ ।
ପ୍ରଭାତେ କାର୍ତ୍ତିକବ୍ରତୀ ପୁଣ୍ୟ ଶଙ୍ଖ ସ୍ୱନେ
ତୁଟିଯାଏ ନିଦ୍ରା ମୋର, ମଣେ ମୁଁ ତାହାକୁ
ତବ ଆଗମନୀ ବାଦ୍ୟ, ମାତ୍ର ବୃଥା ଆଶା,
ଆଶା ସିନା ଖାଲି ଶୂନ୍ୟ ପାଦପର ଛାୟା,
ଛାୟାବୃକ୍ଷେ ସମ୍ଭବେ କି କେଉଁ କାଳେ ଫଳ?

ଦେଖେଁ ଚକ୍ଷୁ ଫେଡ଼ି, ଅଗ୍ରେ ରହିଛି ବିମୁକ୍ତ
ହେମନ୍ତ ରଚିତ କାବ୍ୟ, ପଢେଁ ତାହା, ମାତ୍ର
ହୁଏ ନାହିଁ ଆତ୍ମା ଆର୍ଦ୍ର ତହିଁ, ନାହିଁ ତହିଁ
ପରିପୂର୍ଣ୍ଣ ସୌନ୍ଦର୍ଯ୍ୟର ତରଙ୍ଗ ଆବେଗ,
ନାହିଁ କୋକିଳର କୁହୁ, କିମ୍ବା କେକି-କେକା;
ହେ ନୀରବ କବିମଣି, ତବ କାବ୍ୟ ସହ
କି ଗୁଣେ ଯୋଖିବି ଭଲା ସେ ଜୀର୍ଣ୍ଣ କାବ୍ୟକୁ,
ଅଙ୍କିତା ମହତ ସହ ଅଧମ ଉପମା,
ବାଷ୍ପରୁଦ୍ଧ କଣ୍ଠେ କରେଁ ସାଙ୍ଗ କାବ୍ୟ ପାଠ ।

ଅନନ୍ତର ଆସେ ଶୀତ, ଅହୋ, ସେ ତୁଷାର
କି ଭୀଷଣ ପ୍ରାଦୁର୍ଭାବ, ପରଶେ ତାହାର
ଅଚଳ ସଚଳ ହୁଏ, ସଚଳ ଅଚଳ ।
ଦିଶିଲା ଶରୀର ମୋର ଶ୍ରୀହୀନ ପାଣ୍ଡୁର,
ଦଳିତ କଜ୍ଜ୍ୱଳନିଭ ଦିଶିଲା ଉଜ୍ଜ୍ୱଳ
କାକକାନ୍ତ, ଆନ କାନ୍ତ ମଳିନ ନିଷ୍ପ୍ରଭ ।
ତର ଅବଧବା ହୋଇ, ଭୂଷଣ ବର୍ଜିଲେ
ଧରିଲି ବିଧବା ବେଶ ହାୟ ମୁଁ ଅଭାଗୀ ।
ଘୋର ଶୀତେ ବସିଗଲା ରକ୍ତ ଘନ ହୋଇ,
ପ୍ରତେ ହେଲା ଲିପ୍ତ ଯଥା ତୁଷାର ପ୍ରଲେପ,

ଫାଟିଗଲା ଅସ୍ଥି ଚର୍ମ ହୋଇ ପିଣି ପିଣି,
ଝିଲମାରି ହସ୍ତପଦ ହେଲାକ ଅସାଡ଼ ।
ପୂର୍ଣ୍ଣ ହେଲା ସୃଷ୍ଟି ପ୍ରାୟେ ଘନକୁଜ୍‌ଝଟିରେ,
ପୂର୍ଣ୍ଣ ଯଥା କ୍ରୋଧୀ ହୃଦ କ୍ରୋଧାନଳଧୂମେ,
ସେ ଧୂମ୍ର-ସାଗରଗର୍ଭେ ବୁଡ଼ି ଚରାଚର
ଜୀବନ୍ତେ ଦଶିଲେ ସର୍ବେ ପ୍ରେତମୂର୍ତ୍ତି ଯଥା,
ବୁଡ଼ଗଲା କୁହୁଡ଼ିରେ ଅନନ୍ତ ଆକାଶ,
ସ୍ୱଭାବେ ସେ ଦଗମ୍ବର, ଦଗମ୍ବର ପ୍ରାୟ
ବୋଲ ହୋଇ କଳେବରେ ରଜତ ଶଭ୍ରୁତ
ଧରିଲା କି ଯତଭୂତି, ସାର୍ଥକ ସ୍ୱନାମ ।
ଶୀତେ ହୋଇ ଜୀବଲୋକ ଅଣ୍ଡିର ନୈରାଶ୍ୟେ,
ଏମନ୍ତ ସମୟେ ଆସି ତୁମ୍ଭ ପ୍ରିୟଦୂତୀ
ଫୁଲଚୁଳି, କଲା ମୋତେ ଆଶ୍ୱାସ ପ୍ରଦାନ,
ଆଶ୍ୱାସେ ଯେସନ ପ୍ରାୟେ ପୂଷାଦୂତୀ ଉଷା
ପୂଷାପ୍ରିୟା ପଦ୍ମିନୀକୁ, ସେହି ଉଷା କଲା
ସମୁଜ୍ଜ୍ୱଳ ହାସ୍ୟମୁଖୀ, ପାଟଳବରଣୀ ।
ଦେଖିଲେ ଆବର ଏକ ମଙ୍ଗଳ ସଙ୍କେତ—
ଚୂତରାଜ ଅଙ୍କେ ବସି ଚୂତରାଜକେମା
ମଞ୍ଜରୀ ସୁନ୍ଦରୀ, ଗୁରୁ ହୈମକାଞ୍ଚିନୀ,
ଆଚରିଛି ସ୍ୱୟମ୍ବର ବ୍ରତ । ଅଳରାଜ,

ବାୟୁରାଜ, ପିକରାଜ ଆଦି କେତେ କେତେ
ଖ୍ୟାତନାମା ଖ୍ୟାତଯଶା ରାଜା ମହାରାଜା,
ବେଢ଼ିଛନ୍ତି ଚଉପାଶେ ତାର, କଳରବେ,
ହଳଦୀବସନ୍ତବଧୂ, କାଞ୍ଚନ ଦୁକୂଳା—
ବୀଣାବାଣୀ, ସୁପ୍ରବୀଣା କନ୍ୟା ସଖି ପ୍ରାୟ
ହର୍ଷ ହୋଇ କନ୍ୟା ପାଶେ ଅର୍ପୁଛି ତାହାକୁ
ରାଜନ୍ୟମଣ୍ଡଳ କୁଳ ଶୀଳ ପରିଚୟ—
ଲଳିତ ମଧୁରସ୍ୱରେ—ପୁଲକବ୍ୟଞ୍ଜକ ।
ମଧୁ, ତୁମ୍ଭେ ଆସିବ ଏ ମହାସ୍ୱୟମ୍ବରେ
ଜାଣେ, ବାନ୍ଧ ଏ ଭରସା, ଅଛୁ ପଥ ଚାହିଁ,
ଚାହିଁ ଥାଏ ତାରା-ନେତ୍ରେ ଜଣୀଥିନୀ ଯଥା
ନିଶାନାଥ ପଥ, ବ୍ୟଗ୍ର ବ୍ୟାକୁଳ ନୟନେ,
ପ୍ରବେଶିଲେ ଆସି ତୁମ୍ଭେ ଉତ୍କୁଳନାହା,
ଧୋଇ ଦେବ ପଦ ତବ ବଚ୍ଛେଦ-ଲୋତକେ ।



# ଦ୍ୱିତୀୟ ସର୍ଗ ।



( ଭ୍ରମର ପ୍ରତି କୁସୁମସନ୍ଦେଶ )

ପ୍ରଣମେ ପଦ୍ମରେ ତବ ଅଳିକୁଳରାଜା,
ତରୁବାଳା ଏ କୁସୁମ—ମର୍ତ୍ତ୍ୟର ତାରକା,
ପ୍ରଣମେ ପାଦପଦ୍ମେ ନତଶିରେ ଯଥା
ମୋର ଲତା-ମାତା, ଧୀର ସମୀପରେ ଦୋହଲ ।
ଘେନ ପ୍ରାଣବନ୍ଧୁ, ଦୀନା ବନବାସିନୀର
ପ୍ଲେତକ ଲଳିତ ଲେଖ—ବିରହବ୍ୟଞ୍ଜକ,
ପେଷିଲି ମୁଁ, କୃଷ୍ଣକାନ୍ତ, ମତ—ଦୂତୀ ହାତେ,
ପେଷିଲା ଯେସନ କୃଷ୍ଣ-ବିରହ-ବିଧୁରା
କୃଷ୍ଣପ୍ରାଣାଧିକା ସଖୀ ରାଧିକା ଗୋପିକା
ଲେଖହସ୍ତେ ଲଳିତାକୁ, ଅପ୍ସରାଦଳିତା,
( କମ୍ବା ରୂପ-ସ୍ୱର୍ଣ୍ଣଦୀପେ ସୁବର୍ଣ୍ଣ ଶଳତା )
କୃଷ୍ଣ ପାଶେ, ବୃଷ୍ଣିବଂଶ-ସିନ୍ଧୁ ସୁଧାନିଧି ।
ଘେନିଗଲା ଦେଳୁଁ ନାଥ, ଅନ୍ଧାରି—ଅକ୍ରୂର
ବସାଇ ତୁମ୍ଭଙ୍କୁ ହାୟ ସମୀରଣ—ରଥେ,
ବଂଶରନ୍ଧ୍ର—କଂସପୁରେ, ଅତୁର ମୁଁ ଅଛି,
ହେ ବଂଶୀବାଦକ, ଧାଇ ମୋହନ ମୁରଲୀ,

ରଖ ତବ ଏ କୁସୁମ—ଶୁଷ୍କ ଜୀବନ ।
ପାଦପର ନେହ ମୁହିଁ, ହେ ନୀଳମାଣିକ୍ୟ,
ତୁମ୍ଭେ ସେ ନେହର ଡୋଳା, ଉଜ୍ଜ୍ୱଳ ସୁନ୍ଦର ।
ଭୁଞ୍ଜୁଛି ମୁଁ ଯେ ଦୁର୍ଗନ୍ଧ ପ୍ରତନିଃଶ୍ୱାସରେ
କି କହିବ ତାହା, ଦୁଷ୍ଟ ପାପିଷ୍ଠ ପବନ
ଲଗାଇଛି ହଠ ସଦା କରୁଛି ବରକ୍ତ
ମୋତେ, ମଧୁ ପ୍ରତ୍ୟାଶାରେ କେବେ କରେ ଅଳି,
କେବେ ରଚି ଦିଏ ଗାଳି, ମରମର ସ୍ୱରେ,
କେବେ ବା ପ୍ରହାରେ ପନ୍ଥେ, କରେ ମୋତେ ହାୟ
କ୍ଷତ ବିକ୍ଷତାଙ୍ଗ, ମାତ୍ର ତେବେ ସୁଦ୍ଧା ତାକୁ
ନଦିଏ ମୁଁ ମକରନ୍ଦ, ଯା ତୁମ୍ଭର ପ୍ରାପ୍ୟ,
କି ଗୁଣେ ଲଭିବ ତାହା ପାଷଣ୍ଡ ବର୍ବର ?
ନାସ୍ତିକ ଚଣ୍ଡାଳ ପନ୍ଥେ ଦେବଭୋଗ୍ୟ ସୁଧା
ନ ପରଶି, ଫିଙ୍ଗି ଦେବା ବରଂ ଶ୍ରେୟସ୍କର ।
ତୁଳିବ ନାରଙ୍ଗ କର୍ଣ୍ଣ ମହାମନ୍ଦ କାହିଁ ।
ଦୁର୍ବଳେ ଅବଳା ମୁହିଁ, ସଲଳ-କୋମଳୀ,
କି କରିବି, ବଳେ ଦୁଷ୍ଟ ହରିଲା ମୋ ବାସ,
ହରିଲା ଯେସନ କ୍ରୂର କୁରୁ ଦୁଃଶାସନ
ପାଣ୍ଡବ ମହଷୀ କୃଷ୍ଣା ଯାଜ୍ଞସେନୀ ବାସ
କୁରୁସଭା ମଧ୍ୟେ, ହାୟ ଗୁରୁଜନ ଆଗେ ।
କେତେ ତରୁ ମହାତରୁ, ଭୀଷ୍ମ ଦ୍ରୋଣ ପ୍ରାୟ

( ମହାରଥି କୁଳପତି ଶୂରେଶ-ଶାତନ )
ଦେଖି ମୋର ଅପମାନ ନ କହନ୍ତି କିଛି,
ବସନ୍ତି ତୁଷାର-ଅଶ୍ରୁ କାନ୍ଦେ ମୁଁ ହାରବେ ।
ହଲାଇ ହଲାଇ ମୋତେ ଯଥା କରେ ଦୁଷ୍ଟ
ଗୁଣର ଗୁରୁତ୍ୱ ମୋର, ଗୃଲ୍ମଣୀ ଯେସନ
ଚଲାଇ ଚଲାଇ ନାଶେ ଶସ୍ୟର ବାହୁଲ୍ୟ ।
କାହାକୁ କହିବ ଦୁଃଖ, ଅଦୃଷ୍ଟେ ଧିକ୍କାର
ହୃଦୟର ବ୍ୟଥା ରହେଁ ହୃଦୟେ ଗୋପନେ,
ସେ ନିର୍ବାଣୀ ବ୍ୟାକୁଳତା ଦହେ ମୋ ଅନ୍ତର,
ଦହେ ଯଥା ଦାବାନଳ ମୋ ପିତା-ପାଦପେ ।
ପ୍ରଜାପତି ଆଉ ଏକ ଦୁରନ୍ତ ମସ୍କରୀ,
ଇନ୍ଦ୍ରଧନୁ ବର୍ଣ୍ଣଦର୍ପ ଚୋରିଲ କୌଶଳେ,
ବୁଡ଼ାଇ ତହିଁରେ ତନୁ, ଆସେ ସେ ନିର୍ଲଜ୍ଜ,
ଦିବ୍ୟରୂପେ ଭୁଲାଇବା ଆଶା ବାନ୍ଧି ମନେଁ ।
କିନ୍ତୁ ମୂଢ଼ ଜାଣେ ନାହିଁ—ନ ଗୃହେଁ ପ୍ରଣୟ
ବହିଃଚିକ୍କଣ ରୂପ, ବା ଇନ୍ଦ୍ରିୟ ସେବା,
ଗୃହେଁ ସେ ଅନ୍ତରତମ ମିଳନ—ଅମୃତ ।
ପ୍ରଣୟର ଧର୍ମ ଏହା, କରି ପାରେ ସେହି
ମହତ୍ତ୍ୱରେ ପରିଣତ ଆତ୍ମାର କ୍ଷୁଦ୍ରତ୍ୱେ,
ଯେ ପ୍ରଣୟ ରୂପଜ, ସେ ଇତର ପ୍ରଣୟ ।

ଆପାତ ସରଲ ତାହା ଅନ୍ତ୍ୟମେ ଗରଲ,
ଅଧର୍ମ ସେ, କହେ କନ୍ତୁ ଗ୍ରାମଧର୍ମ ଆଖ୍ୟା ।
ମାଗେ ମଧୁ ପ୍ରଜାପତି, ନ ପାଇଲେ କୋପେ
ଉଡ଼ିଯାଏ ମାଥେ ମୋର ଚରଣ ପ୍ରହାର ।
କନ୍ତୁ ଏ ପାପର, ଦୁଷ୍ଟ ସମୁଚିତ ଦଣ୍ଡ
ଭୁଞ୍ଜେ ସେହି ଦଣ୍ଡେ, ପାଏ ହାତେ ହାତେ
ଅବଲାଧର୍ଷଣ ଫଳ, ଗ୍ରାସି ତାକୁ ପକ୍ଷୀ,
କରେ ମୋତେ ଭର୍ତ୍ସୁଁ ଶାହି, ରଖେ ମୋର ମାନ,
ମହତର ମାନ ସିନା ରଖନ୍ତି ମହତେ ।

ତରୁରାଜ କେମା ମୁହିଁ, ମହାମାନବତୀ,
ଉଚ୍ଚବଂଶେ ଅବତଂସ, ଜନକ ମୋହର
କାଳଜୟୀ, ଆତ୍ମତ୍ୟାଗୀ, ବହୁପ୍ରାଣିପୁଷ୍ଟା
ଅବର ଅଜସ୍ରଦାତା, ପୁଣ୍ୟବପୁ ତାଙ୍କ
ବ୍ୟବହୃତ ହୁଏ ଯାଗେ, ଦେବତା ଗଠନେ ।
କେତେ ବା କହିବ ଆଉ, ନୁହେଁ ଏହା ମୋର
ସୌଭାଗ୍ୟ-ଗର୍ବିତ ଭାଷା—ଅମର ସତ୍ୟ ଏ ।
ବନ-ସ୍ୱର୍ଗ ତିଲୋତ୍ତମା ମୁହିଁ, ଅଣି ତହି
ସକଳ ସାରରୁ ସାର, ଗଢ଼ିଲା ମୋ ତନୁ ,
ଚନ୍ଦ୍ରିକାରୁ ଶୀତଳତା, ବହ୍ନିତରୁ ଦ୍ୟୁତି,



ଅମୃତରୁ ମଧୁରିମା, ସ୍ନେହ ଶିଶୁହାସ୍ୟୁଁ,
ଶୁଦ୍ଧତା ସ୍ୱର୍ଗଙ୍ଗା ନୀରୁଁ, ପଣ୍ଡରୁଁ ଗୌରବ,
ସୁବାସ ମଳୟ ଶ୍ୱାସୁଁ, ତାରାରୁ ଔଜ୍ଜଲ୍ୟ,
ଇନ୍ଦ୍ରଧନୁଠାରୁ ଦିବ୍ୟ କାନ୍ତି, କୋମଳତା
କାମଧେନୁ ଦୁଗ୍ଧଜାତ ନବନବନୀରୁଁ,
ଏତେ ଉପାଦାନ ବହି ରହିଛି ମୋ ଦେହେ ।
ଶାନ୍ତ ସ୍ନିଗ୍ଧ ସିନ୍ଧୁ ମୁହିଁ ଖ୍ୟାତରେ ଜଗତେ,
ଶାରଦ ସୁନ୍ଦର ଇନ୍ଦୁ ନୁହେଁ ମୋତେ ସରି
ଶୋଭାପଣେ, ଆଉଆନ, ଦେବାତ୍ମତା ମୁହିଁ,
ମୋ ବିହନେ ଅସୁନ୍ଦର ସୁନ୍ଦରୀ କବରୀ ।
ସର୍ବାଗ୍ରେ ବରଣ ମୋର ମଙ୍ଗଳକାର୍ଯ୍ୟରେ,
ମଧୁମକ୍ଷୀ ମୋ ଗର୍ଭରୁ ସଂଗ୍ରହଣ ମଧୁ,
ପ୍ରଦାନେ ଜଗତ ହିତେ, ଧରି ମୋ ସୁଗନ୍ଧ,
ବିକନ୍ତି ଅତର ନାମେ ବିଳାସ ଶିଳ୍ପିଏ,
ଉଦ୍ଭିଦ ତପସ୍ୱୀକନ୍ୟା ମୁହିଁ ତପସ୍ୱିନୀ,
ସେବା ମୋର ଧର୍ମ, ପ୍ରାଣ ଉତ୍ସର୍ଗିଛି ତହିଁ ।
ଆବର 'କବିଙ୍କ ପ୍ରିୟ ଅକ୍ଷୟ ସମ୍ବଳ,
ମୋ ଘେନି ସେମାନେ ସଦା ରଚନ୍ତି ଉପମା ।
ଏତେ ଗୁଣ ସତ୍ତ୍ୱେ ହାୟ ଇତର ହସ୍ତରେ
ଲଭେ ମୁଁ ଦୁସ୍ତର ଶାସ୍ତି, କି କହିବ ତାହା ।

କର ମୋତେ ସ୍ଥାନଚ୍ୟୁତ ଦୁଷ୍ଟ ପ୍ରଭଞ୍ଜନ
ପକାଏ କଣ୍ଟକାସ୍ତୃତ କଦର୍ଯ୍ୟ ସ୍ଥାନରେ,
ପଞ୍ଚବଟୀ ବନୁ ହରି ରାବଣ ଯେସନ
ଜାନକୀ ଯୋଜନଗନ୍ଧା, ରକ୍ଷୋରାଜ୍ୟେ ନେଇ
ରଖିଲ ବେଢ଼ାଇ ଚେଡ଼ୀ ଦୁରନ୍ତା ଦୁର୍ମୁଖା,
ବୈଦେହୀବିଳାସୀ ରାମ ଅନୁପସ୍ଥିତରେ ।
ଡାକେ ମୁଁ ଆରତେ ତହୁଁ—ହେ ମଧୁପଶିଳ,
ତବ ଏ ଯୋଜନଗନ୍ଧା ଆବଦ୍ଧା ଅସ୍ଥାନେ,
ଦେଖ ଅୟି ପ୍ରାଣନାଥ ଦୁଃଖିନୀ ଦୁର୍ଦ୍ଦଶା ।
ହେ ମଧୁ ଗୁଞ୍ଜନ, ମଞ୍ଜୁ ନିକୁଞ୍ଜବିହାରୀ—
ରସିକ କୁଞ୍ଜରବର, ହେ ନୀଳସୁନ୍ଦର,
ଆସି ଖରେ ଉଦ୍ଧାର ଏ ରୁଦ୍ଧ କାରାଗାରୁ ।
ଅସୀମ ତୁମ୍ଭର ଋଣ, ଅଶୋଧ ଆଦର,
କେତେ ସ୍ଥାନେ ଅବା ମଧୁ ନାହିଁ ଏ ଜଗତେ,
ଅଛି ତାହା ଇକ୍ଷୁଦଣ୍ଡେ, ପରିପକ୍ୱ ଫଳେ,
ପିକ ଭାଷେ, ଶିଶୁହାସେ, ସଜ୍ଜନ ଅନ୍ତରେ,
ମାତୃସ୍ନେହେ, ହରିନାମେ, ପ୍ରକୃତ ଶୋଭାରେ,
ଏତେ ମଧୁସତ୍ତ୍ୱେ, ତୁମ୍ଭେ ଆସକ୍ତ ମଧୁପ
ମୋ ମଧୁ ବିନ୍ଦୁରେ ଯାହା, ସୌଭାଗ୍ୟ ସେ ମୋର ।
ସନ୍ଦେହ ଏହି ଦୁଷ୍ଟାସ୍ତୃତ—ଉତ୍ଫଣା ନାଗୁଣୀ

ଦଂଶେ ଶିରେ ବାରମ୍ବାର, ଆତ୍ମା ଅନ୍ତସ୍ତଳେ,
ଭାବେ ତହୁଁ ଶୋକେ, ହାୟ, ମୋ ଭାଗ୍ୟଦେବତା
ଲେଖିଛି ମୋ ଭାଗ୍ୟପଟେ ଅମଙ୍ଗଳ ଶ୍ଳୋକ
ଅଙ୍ଗାର ଲେଖନୀ ମୁନେ, ଅମଙ୍ଗଳ ବେଳେ ।
ବଚ୍ଛେଦ ସନ୍ତାପ ପୁଣି ମଧ୍ୟାହ୍ନ ସନ୍ତାପ,
ବେନି ଗୃପ ମଧ୍ୟେ ପଡ଼ି ଫାଟିଯାଏ ହୃଦ,
ଫାଟିଯାଏ ଶସ୍ୟ ଯଥା ପେଷାତଙ୍କ ଗୃପେ ।
ହୁଏ ମୁଁ ମୂର୍ଚ୍ଛିତା ତହୁଁ, ମାତ୍ର ଅପରାହ୍ନେ
ଚେଇଁ ଉଠେଁ, ପ୍ରିୟ, ତବ ଅମୃତ ପରଶେ,
ନନ୍ଦନ ବସନ୍ତ ସ୍ପର୍ଶେ ମୃତଧରା ଯଥା ।
ଉଲ୍ଲସି ଉଠେ ମୋ ହିଆ ସେ ସିଗ୍ଧ ପରଶେ,
ଆତ୍ମା ହୁଏ ହର୍ଷାହ୍ଲତ, ଆହା ସେ ସମୟ
କି ଆନନ୍ଦମୟ, ଭାବମୟ, ପ୍ରୀତିମୟ,
ପୁଣ୍ୟମୟ ସଙ୍ଗୀତ ସେ ମଧୁର ମିଳନେ
ମର୍ତ୍ତ୍ୟେ ଥାଇ ସ୍ୱର୍ଗ ସୁଧା କରେଁ ମୁହିଁ ପାନ ।
କେତେରୂପେ କେତେ ଭାବେ ସେବେ ମୁଁ ତୁମ୍ଭଙ୍କୁ,
ଦବସଯୌବନେ ଯେବେ ହୋଇ ତୁମ୍ଭେ କ୍ଲାନ୍ତ,
ଘର୍ମସିକ୍ତ, ପିପାସାର୍ତ୍ତ, କର ହେ ଶୟନ,
ମୋ ମନ୍ଦାରକୋଳେ, ବନ୍ଧୁ, (କାବ୍ୟତାରା ଯଥା
ଉଷାକୋଳେ) ରଜା. ପ୍ରାୟ ରଙ୍ଗପାଟ ଶେଯେ

ଘୋଡ଼ି ହୋଇ ରଙ୍ଗପାଟ ଓଢ଼ଣୀ ଶରୀରେ,
ବହୁଦିଏଁ ସେକାଳେ ମୁଁ କେଶର-ଦ୍ରୁମରେ ।
ଘେର ମୋତେ ଚଉପାଶୁଁ ରୁଦ୍ର ରୌଦ୍ରରେଖା,
ସପ୍ତ ମହାରଥୀ ଯଥା ଅର୍ଜୁନ ନନ୍ଦନେ,
ବିନ୍ଧୁଥାଏ ଶତ ଶତ ଉତ୍ତପ୍ତ ଶଲାକା
ଅଭିମନ୍ୟୁ, ମାତ୍ର, ତାହା ନମଣେ ମୁଁ ବ୍ୟଥା —
ତୁମ୍ଭ ସୁଖସ୍ପର୍ଶଭୋଳେ, ଜାଣ ତା ସକଳ ।
ଅଳସିକି, ବୋଲହୋଇ ମୋ ପୁଣ୍ୟ-ପରାଗେ
ଉଡ଼ିଯାଅ ଚଳ ଚଳ ମୋ ଅଙ୍କରୁ ଯେବେ
ମୋ ମଧୁ-ମଦିରାପାନେ, ପ୍ରାନ୍ତମନ ବାଟେ,
କି ଦୃଶ୍ୟ ସେ ଆହା, ନେତ୍ର ମନ ବିମୋହନ,
ସେକାଳେ ସୁନ୍ଦରବର, ଦଣ୍ଡ ତୁମ୍ଭେ ଯଥା
ପ୍ରେମର ବିଭୂତିବୋଳା ପ୍ରେମର ସନ୍ନ୍ୟାସୀ,
ମଧୁର ଝଙ୍କାର ତବ ପ୍ରଣବ ଓଁକାର ।
କରେଣି ତା, ଫୁଟିଉଠେ ଆନନ୍ଦ-ଆଲୋକ
ହୃଦେ ମୋର, ପଡ଼େ ମୁଖେ ଗୌରବ ଉଜ୍ଜ୍ୱଳ ।

*  **

ସିନ୍ଧେ ଲଭେ ନଭ ସଙ୍ଗେ ଜ୍ୟୋତ୍ସ୍ନାର ବିବାହ,
ମହୋତ୍ସବମୟ, କନ୍ୟା ପିତାରୂପେ ଶଶୀ—
ତାରିକାନ୍ତ, ଉପବିଷ୍ଟ ପ୍ରଭୁ-ବେଦୀ ପୃଷ୍ଠେ,

ଶୈପାଣେ ଅସଂଖ୍ୟ ତାରା, ଯୌତୁକରତ୍ନ ସେ,
ଉଚ୍ଚାରେ ଧରଣୀ ବେଦମନ୍ତ୍ର, ସୁଗମ୍ଭୀରେ ।
ନବପତ୍ର ଅଙ୍କେ ବସି ଚନ୍ଦ୍ରିକା-ସୁନ୍ଦରୀ
ହସି ହସି ଦେଉଥାଏ ପୁଲକେ ମୂର୍ଚ୍ଛିତା ।
ହେର ଏ ଉତ୍ସବ ଲୀଳା—ସୁଧାମୃତ ବୋଳା,
ପଡ଼ିଯାଏ ମନେ ମୋର ବିବାହ ସମୟ,
ଯାତେ ମୋର ପିତା, ହାୟ, ତୁମ୍ଭ ପୁଣ୍ୟକରେ
ସମର୍ପିନ୍ତ କାନ୍ଦି କାନ୍ଦି, ପତ୍ର ନିପତିତ
ଶିଶିର କଣିକାଛଳେ, ଜନନୀ ମୋହର
ଲତାରାଣୀ, କଲସ୍ୱନ ସମୀରଣ-ମୁଖେ
କହନ୍ତି ତୁମ୍ଭଙ୍କୁ କେତେ ବୁଝାଇ ମଧୁରେ
କ୍ଷମିବାକୁ ଶତ ତ୍ରୁଟି ଶତ ଅପରାଧ,
ତାଙ୍କର ଏ ପ୍ରାଣସମା ମାନିନୀ କନ୍ୟାର ।
ବରଣୀ ବ୍ରାହ୍ମଣ, ବ୍ରହ୍ମା, ପୁରୋହିତ ରୂପେ
ଉଚ୍ଚାରନ୍ତି ବିହଙ୍ଗମେ ବିବାହର ମନ୍ତ୍ର ।
ସେହି ସ୍ମୃତି,—କଣ୍ଟରୂପେ କାଟେ ମୋ ହୃଦୟ,
ତୁମ୍ଭର ବିରହ ଶୋକ ହରିନିଏ ପ୍ରାଣ,
ମାତ୍ର ମରି ସୁଦ୍ଧା ମୁହିଁ ନ ପାରେ ପାଶୋରି
ତୁମ୍ଭଙ୍କୁ, କି ମୋହ ତୁମ୍ଭେ ଲଗାଇଛ ବନ୍ଧୁ,
ପୁଣି ଜନ୍ମ ଲଭେ ତୁମ୍ଭ ପଦସେବାପାଇଁ,

ତୁମ୍ଭ ଲାଗି ଜଳ ମରି ଜଳ ହୁଏଁ ଜାତ ।
ଭାବେଁ ମନ-ଯାନେ ଚଢ଼ି ଯିବ ତୁମ୍ଭ ପାଶେ,
ମାତ୍ର ସେ ନ ପାରେ ବହି ଏ ପୋଡ଼ା ଶରୀରେ,
ବିନୟେ ପ୍ରାର୍ଥନା କରେଁ ପଥିକି ବିଶେଷ,
ଡାକେଁ ହେ ବିହଙ୍ଗରାଜ, ଦୟା ବହି ତୁମ୍ଭେ
ପ୍ରଦାନ ତୁମ୍ଭର ପକ୍ଷ ମୋତେ, ଯାଏଁ ମୁହିଁ
ଉଡ଼ି ବନ୍ଧୁ କଡ଼, କିନ୍ତୁ ବୃଥା ଏ ଯାଚଞ୍ଜା
ନ କରନ୍ତି କର୍ଣ୍ଣଦାନ କେହି ମୋ କଥାରେ ।
ଏକମାତ୍ର ଚକ୍ରବାକୀ, ସମଦୁଃଖୀ ମୋର,
ପ୍ରଦାନେ ସାନ୍ତ୍ୱନା ମୋର ଅଶାନ୍ତ ଜୀବନେ,
ଦୁଃଖୀ ସିନା ଜଣା କରେ ଦୁଃଖିଦୁଃଖଭାର ।
ଭାଷେ ସେ କୋମଳେ—"ଭଗ୍ନି, ନୁହ ଉନ୍ମନସ୍କ,
ଏ ପୋଡ଼ା କପାଳୀ ସୁଦ୍ଧା ସମଦଶାପନ୍ନ
ତୋର, ବେନିଙ୍କର ଭାଗ୍ୟ ଗଢ଼ିଛନ୍ତି ବିଧାତା
ଏକ ଉପାଦାନେ, କିବା ପ୍ରବୋଧିବି ତୋତେ ।
ନ କର ଦୁଃଖକୁ ଭୟ, ନୁହେଁ ସେ ଅଶିବ,
ଦୁଃଖଭୋଗେ ହୁଏ ଆତ୍ମା ସ୍ୱଚ୍ଛ ପରିଶୁଦ୍ଧ,
ଅଗ୍ନି ସିନା ସ୍ୱର୍ଣ୍ଣେ କରେ ନିର୍ମଳ ଉଜ୍ଜ୍ୱଳ ।
ଦୁଃଖଦ୍ୱାର କରି ହୁଏ ସୁଖ ଉପାର୍ଜ୍ଜନ,
ନ ବୁଡ଼ିଲେ ସିନ୍ଧୁଗର୍ଭେ ଶ୍ୱାସକ୍ରିୟା ରୋଧି

କେ କରିବ ଉପଲବ୍ଧି ମୁକୁତା ପ୍ରବାଳ,
ନ ସହିଲେ କଣ୍ଟାଘାତ ନୁହେଁ କୋଳ ଲଭ,
ଦୁଃଖ ପଛେ ଥାଏ ସୁଖ, ନିୟତି ନିୟମେ,
ରଜନି ପଛେ ଦିବା ଯଥା, କମ୍ପା ଶୀତ ପଛେ
ଥାଏ ଯଥା ମଧୁମୟ ସୁଖଦ ବସନ୍ତ ।
ଧୈର୍ଯ୍ୟ ଧରି କିଛିକ୍ଷଣ ରହ ଲୋ ଭଉଣି,
ନିଶା ଅବସାନ ସହ ହେବ ଅବସାନ
ଦୁଃଖ, ଅମ୍ଭ ଦେହଙ୍କର, ଆଣି ଦେବ ଊଷା,
ନବୀନଜୀବନ ସଙ୍ଗେ ଜୀବନ ବାନ୍ଧବେ ।
ଏହିକାଳେ ତରୁଚୂଳୁଁ ହୁଁ ହୁଁ ଆ * ଘରଣୀ,
ହୁଁ ହୁଁ ଶବ୍ଦେ ସମର୍ଥିଲା ରଥାଙ୍ଗୀ ବଚନେ,
ତହୁଁ ମୁଁ ଆଶ୍ୱସ୍ତ ହୋଇ ଉତ୍ଫୁଲ୍ଲନୟନେ
ଚାହିଁ ଅଛୁ ଉଷାପଥ, କରିବ ସେ ଉଦେ
ତପନଦେବଙ୍କ ସହ ମୋ ପ୍ରାଣ-ତପନେ ।
ଚକ୍ରବାକ ଦେବୀପଦେ ଅବନତଶିରେ
କରୁଛି ଜଣାଣ, ଶୀଘ୍ର ପ୍ରଭାତବା ପାଇଁ,
ଚକ୍ରଭୋଗୀ ଠାକୁରାଣୀ, ଅଛୁ ତାଙ୍କୁ ଜଣା
ବିରହଯନ୍ତ୍ରଣା, ଦିନେ ଭୋଗନ୍ତି ସେ ତାହାଁ,
ବାନ୍ଧିଛି ମୁଁ ଆଶା, ସ୍ୱୟଂ ବିରହିଣୀ ହେତୁ
ବହିବେ ସେ କୃପା ନଷ୍ଟେ ସମଦୁଃଖୀ ପ୍ରତି ।

---

* ଘୁଟୁ ରୁଦୁମା ପକ୍ଷୀ ।

କଳାହେତୁ ମସ୍ତକେ ବନ୍ଦନ୍ତି ତୁମ୍ଭଙ୍କୁ,
କୋଟି ତୁଣ୍ଡ କୋଟି ଜିହ୍ୱା ଜନାପବାଦର,
କେ ରୋଧିବ ତାହା, ଯାଏ ନାହିଁ ରୂପେ ଚିହ୍ନା
ବିଶେଷତ୍ୱ କା'ର, ମାତ୍ର ଚିହ୍ନାଯାଏ ଗୁଣେ,
ଗୁଣ ଯାର ଶୁଭ୍ର, ହେଉ ପଛେ କଦାକାର
ସୁନ୍ଦର ସେ—ସୁନ୍ଦରର ସୁନ୍ଦର ଭୂଷଣ ।
ଅନାଦରେ କେବେ କହେ କଳା ବୋଲି କେହି
ମଣିବର ଇନ୍ଦ୍ରନୀଳେ, ବରଞ୍ଚ ତାହାକୁ
ବହନ୍ତି ରାଜନ୍ୟବୃନ୍ଦ ବକ୍ଷେ, ଶିରୋଦେଶେ ।
ଗୁଣିଗଣଶିରୋମଣି ତୁମ୍ଭେ ଗୁଣମଣି,
ଅନନ୍ୟ ସୁନ୍ଦରରୂପେ ଜାଣେଣି ତୁମ୍ଭଙ୍କୁ
ଫୁଟି ଉଠେ କବିଙ୍କର କଳ୍ପନା-ସୁମନ—
ହେ ସୁମନ ମନୋହର, ବାସ୍ତବବୃନ୍ତରେ ।
କଳା ରୂପ ନୁହେଁ ନିନ୍ଦ୍ୟ, କେ ନିନ୍ଦେ କୋଇଲେ ?
ମହତ୍ତ୍ୱର ବର୍ଣ୍ଣ ବିନା କୃଷ୍ଣିମା ଜଗତେ,
ଅନନ୍ତ ଆକାଶ କୃଷ୍ଣ, କୃଷ୍ଣ ମହାସିନ୍ଧୁ,
( ସ୍ଥିତ ଯା ଉଦରେ କୋଟି କୁବେରର ନିଧି )
ଘନ-କୃଷ୍ଣ, ଗିରି-କୃଷ୍ଣ, ଥାଉ ଆନ କଥା,
ଜୁହାରେ ଜଗତ ଯାଙ୍କ ପୁଣ୍ୟପଦମୂଳେ,
ଜଗତ ଭରସା ସେହି ଦେବ ଜଗନ୍ନାଥ

ନୀଳାଦ୍ରି କେଶରୀ, ବନ୍ଦେ କୃଷ୍ଣରୂପ ଧରି ।
ପରମା ପ୍ରକୃତିରୂପା କରାଳୀ କାଳିକା
ଆଦ୍ୟା ଶକ୍ତି, ମହାବିଦ୍ୟା, ଦେବାରାଧ୍ୟା ଦେବୀ,
ଆସକ୍ତ ଅସିତରୂପେ-ଅତସୀଗଞ୍ଜିତ ।
ନୁହେଁ କଳା ଅସୁନ୍ଦର, କି ସୁନ୍ଦର ଆହା
କୋକିକଣ୍ଠ, କୁରଙ୍ଗୀର ଚଳ ଚଳ ଡୋଳା,
କେତେ ରମ୍ୟ ସୁନ୍ଦରୀର କୁଞ୍ଚିତ କୁନ୍ତଳ,
କେତେ ବା କହିବି ଆଉ, ହେ ସୁନ୍ଦରମଣି,
ଯାହା ସବୁ ମୂଲ୍ୟବାନ ସୌନ୍ଦର୍ଯ୍ୟ-ସୃଷ୍ଟିରେ,
କୃଷ୍ଣକାନ୍ତ, ତାହା ତୁମ୍ଭ କାନ୍ତିରେ ଗଠିତ ।
କି ମଧୁର ସ୍ୱର ତବ ହେ ଗାୟକରାଜ,
ମଧୁର ଯେସନ ଋଷି ଉପଦେଶ, କିମ୍ବା
ସଜ୍ଜନ ବୈଖରୀ, କେତେ ଶ୍ରୁତିବିନୋଦନ
ସା ରି ଗ ମ ପ ଧ ନି ସା ସ୍ୱରର ଆଳାପ ।
ହେ ସଙ୍ଗୀତବିଶାରଦ, ମଣେ ମୁଁ ତୁମ୍ଭଙ୍କୁ
ସାଙ୍ଗୀତିକ ପ୍ରତିଭାର ନିସର୍ଗ ମୁକୁର ।
ସରଳ ସଙ୍ଗୀତ ତବ ରସଂ ଭାବମୟୀ,
ପ୍ରେମେ ଚଳ ଚଳ, ଯଥା ଭକ୍ତର କଣାଣ ;
ହେଉ ପଛେ ଦୁର୍ବୋଧ ସେ, ଅଥବା ଅସ୍ପଷ୍ଟ,
ମାତ୍ର ତାହା ନବବାଣୀ ନବଜୀବନର ।

ପ୍ରଚ୍ଛନ୍ନ ସେ ବାଣୀ ମଧ୍ୟେ ଯେ ପରମବାଣୀ,
ଅବାଣୀର ବାଣୀ ତାହା, ଭାଷାର ସେ ଭାଷା ।
ସେବା ଦାସୀପଣେ ଖଟି ବୀଣାପାଣି ପାଦେ
ଶୁଣିଛୁ ବୀଣାର ସ୍ୱର, କଳୁ ଶିଳିମୁଖ,
ନାହିଁ ତହିଁ ତବ କଣ୍ଠ-ବୀଣାମଧୁରିମା,
ତବ ସ୍ୱର ତୁଳନାରେ ତୁଚ୍ଛ ମଣେ ତାହା ।
ହେ ଗନ୍ଧର୍ବରାଜ *, ଖରେ ବାହୁଡ଼ ପ୍ରବାସୁ,
ଟଙ୍କାରି ଅମୃତତନ୍ତ୍ରୀ, ଅଜାଡ଼ି ଅମୃତ
ତୁମ୍ବରି କଙ୍କଶ ଏହୁ ଅପ୍ସରା ଶ୍ରବଣେ,
ପୂର୍ଣ୍ଣ କର ପ୍ରଭୁ, ତାର ଅତୃପ୍ତ ଲାଳସା ।



* ଗାୟକଶ୍ରେଷ୍ଠ ।

# ତୃତୀୟ ସର୍ଗ ।



( ଘନ ପ୍ରତି ଚାତକିନୀ । )

କି ଦୋଷେ ବିମୁଖ ତୁମ୍ଭେ ହେ ଜୀମୂତସକ୍ତି,
ଜୀମୂତ-ଜୀବନ ଦାନା ଚାତକିନୀ ପ୍ରତି—
ଚିର ତୃଷା ଆତଙ୍କିନୀ, ତବ ପଦାଶ୍ରିତା ।
ବିଷମ ପିପାସା ମୋର, ମେଣ୍ଟେ ନାହିଁ ତାହା—
ପାପ-ଜୁଷ୍ଟ ଧରଣୀରେ, ଅପୂତ, ଦୂଷିତ,
ହେ ବାରିଦ, ତୁମ୍ଭ ପୁଣ୍ୟ ପ୍ରେମ-ବାରି ବିନା ।
ତୁମ୍ଭ ପରି ବଡ଼ଲୋକେ ଆଶ୍ରା କରି ହାୟ
ପୂରଏଁ ଉଦର ମୁହିଁ ଆଶାରେ କେବଳ,
ଆଶା ବିନା ଶୂନ୍ୟଫଳ—ବ୍ୟର୍ଥ ତପସ୍ୟାରୁ,
କିମ୍ବା ଇନ୍ଦ୍ରଜାଲ-ସ୍ୱପ୍ନ, ସତ୍ୟଯତ୍ର ଶୂନ୍ୟ ।
ପ୍ରତିପାଳ ତୁମ୍ଭେ, ଦେବ, ବିଶ୍ୱଚରାଚରେ,
ପ୍ରଜାରୂପେ ଅର୍ଘ ତୁମ୍ଭେ ପ୍ରତାପୀ ବାରିଶେ
ବାରି-କର, ଆଉ ଯେତେ ଜଳାଶୟ, ସର୍ବେ
ତୁମ୍ଭ ଯୋଗେ ଧନୀ, ଏକା ଏ ହତଭାଗିନୀ,
ଦୁଷ୍ଟ ରୁଷ୍ଟ ଭାଗ୍ୟଦେବ ତୀବ୍ର ଅଭିଶାପେ
ବଞ୍ଚିତ କେବଳ ତବ କୃପାକଣିକାରୁ ।

କୃପଣ, ପ୍ରତିଷ୍ଠାକାମୀ ନୃପ ଆମନ୍ତ୍ରଣେ
ବର୍ଷିଯାଏ ତୈଳବୃଷ୍ଟି ତୈଳାକ୍ତ ମସ୍ତକେ,
ମାତ୍ର ସଦାଶ୍ରିତ ଭୃତ୍ୟ ମରେ ଉପବାସେ,
ତାହା ତାର ଭାଗ୍ୟଦୋଷ, କହିବ କାହାକୁ !
ଏହା ଭିନ୍ନ ନିଜ ପ୍ରତି ନିଜର ସାନ୍ତ୍ୱନା
କି ଅଛି ତାହାର, ହାୟ, ଦଇବିପାକୋଷେ ।
ନ ଜାଣେ କି ପ୍ରଭୁ ତୁମ୍ଭ କୃପାଜଳ ଭିନ୍ନ
ଅମୃତ ମୋ କଣ୍ଠ ତୁଚ୍ଛ, ଆମନ୍ଦେ ତଟିନୀ
ମୋତେ, ମୃଦୁକଲସ୍ୱରେ, ବିନୟେ, ସାଗ୍ରହେ,
ପାନାର୍ଥେ ସଲିଳ ତାର, କିନ୍ତୁ ଘନବର,
ରସେ କି ଭକ୍ତର ଚିତ୍ତ ହରିସଙ୍କୀର୍ତ୍ତନ—
ବିନା,-ଗ୍ରାମ୍ୟଗୀତରସେ, କହେଁ ମୁଁ ତାହାକୁ,—
ନଗେନ୍ଦ୍ରନନ୍ଦନ ! ଧନ୍ୟ ମହତ୍ତ୍ୱ ଲୋ ତୋର,
ତୋ ଆଦରେ, ଶିଷ୍ଟାଗୃରେ ଋଣୀ ମୁଁ-ସତତ,
ମହତର କନ୍ୟା ତୁହି, ସ୍ୱଭାବେ ମହତ,
ବଦତ ମହତ ବିନା ମହତର ମାନ ।
କିନ୍ତୁ ସଖି, ଜାଣୁ ତୁ ତ ମହାବ୍ରତ ମୋର,
ନ ଛୁଇଁ ମୁଁ ମର୍ତ୍ତ୍ୟନୀର, ହେଲେ ସୁଦ୍ଧା ପ୍ରାଣ
କଣ୍ଠାଗ୍ରତ, ସୁବିଶୁଦ୍ଧ ଥିଲା, ତୋର ଜଳ
ଅସିବା ସମୟେ, ମାତ୍ର କଳୁଷିତ ଏବେ

ପାର୍ଥିବ ପ୍ରାକୃତ ଦ୍ରବ୍ୟେ, ଦହ ରତ୍ନାକରେ,
ନ ହେଲେ ସେ ପରିଶୁଦ୍ଧ ପୁନର୍ଜନ୍ମଦ୍ୱାରା,
ହେବ ନାହିଁ ଭୋଗ୍ୟ ମୋର, କମ୍ପା ସ୍ୱର୍ଣ୍ଣମୟ ।
ସ୍ନେହପର ସରସୀକି ପ୍ରବୋଧେଁ ଆବର,
କମଳପ୍ରସୂତେ, ବୃଥା ଆହ୍ୱାନ ତୋହର,
ବିଶୁଦ୍ଧ ଗୋଦୁଗ୍ଧପାୟୀ ଶାରିକା ବିହଗୀ
କରେ କି ମଦିରାପାନ, ଅଚ୍ଛା, କହ ଭଲି
ପଗୃରେଁ ତୋ କଥା ତୋତେ, ତୋ ବକ୍ଷରୁ କେହି
ତୋଳେ କି ଶୈବାଳ, ପଦ୍ମ କୁମୁଦ ଉପେକ୍ଷି ?
ଡାକେ ପୁଣି ମହାସିନ୍ଧୁ, ଗରଜି ଗମ୍ଭୀରେ,
କହେଁ ମୁଁ ତାହାକୁ, ଅତି ସମ୍ପଦରେ କିନ୍ତୁ
ତୁହି ବାରିରାଜ, ଅତି ସମ୍ପଦେ ଯେସନେ
ତୃଷିତ ଧନିକ ଜନ, ଧନଗର୍ବମତ୍ତ ।
ସିନ୍ଧୁରେ କି କାର୍ଯ୍ୟ ମୋର, ଲୋଡ଼ା ମାତ୍ର ବିନ୍ଦୁ,
କାହାର ବା ରୁଚିପ୍ରଦ ଲବଣାକ୍ତ ଜଳ ।
ହେ ନୀଳନୀରଦବର, ଗୃତକଣୀବାଞ୍ଛା,
ପ୍ରଦାନ ଦର୍ଶନ, ରଖ ଏ. ଦାସୀ ଜୀବନ
ବିନ୍ଦୁ ଏ ଜୀବନ ଦାନେ, ବୋଲିବ କା ତୁମ୍ଭେ,—
"ଦୂରସ୍ଥ ଜନର କାହିଁ ସାକ୍ଷାତ ସୁଲଭ ।"
କିନ୍ତୁ ଭାବି ଦେଖ ନାଥ, ତୁମ୍ଭଠହୁଁ ବଳି

ଦୂରବର୍ତ୍ତୀ ଦିବାକର,—କମଳବାନ୍ଧବ,
ତଥାପି ସେ ନିତ୍ୟ ଆସି, ନ ଡର କ୍ଲାନ୍ତିକି
ଅମ୍ଭୋଜିନୀ-ବିମ୍ବାଧର ଚୁମ୍ବନ୍ତି ଆଦରେ ।
ତୁମ୍ଭଠାରୁ ବହୁ ଊର୍ଦ୍ଧ୍ୱେ ନିବସନ୍ତି ଶଶୀ,
ଶୋଭା-ଖଣି ଶ୍ରେଷ୍ଠମଣି ଚନ୍ଦ୍ରିକାବଲ୍ଲଭ,
ଶୁଣନ୍ତି ସେ କୁମୁଦିନୀ ନୀରବ ଆହ୍ୱାନ ।
ପ୍ରୀତିର ସରଣୀ, ନାଥ, ନୁହଇ ତ ଦୂର,
ଅଛି କହେ ଦୂର ଶବ୍ଦ ପ୍ରୀତି-ଅଭିଧାନେ ?
ଅଥବା ଧନେଶ, ତୁମ୍ଭେ ବୋଲିବ ଏମନ୍ତ,—
ଆଜ୍ଞାବହ ସେବକର କାହିଁ ସ୍ୱାଧୀନତା,
ଯନ୍ତ୍ରପିତୁଲୀ ସେ, ଚଳେ ଯନ୍ତ୍ରର ସଙ୍କେତେ ।
କିନ୍ତୁ ଦେବ, ପଚାରେଁ ମୁଁ କଥାଏ ତୁମ୍ଭଙ୍କୁ,
କାହାର ଅଧୀନ ତୁମ୍ଭେ, କିଏ ତବ ପ୍ରଭୁ,
ତୁମ୍ଭେହିଁ ତୁମ୍ଭର ପ୍ରଭୁ, ତୁମ୍ଭର ଅଧୀନ,
ଯଦି କହ ପ୍ରକୃତିର ଆଜ୍ଞାଧୀନ ତୁମ୍ଭେ,
ସେ ତ ତୁମ୍ଭ ମାତା, ଖେଳିବାକୁ ମାତା କୋଳେ
ଯାଚେଁ କି ସନ୍ତାନ କେବେ ଜନନୀ ଆଦେଶ ?
ଦିଅନ୍ତା ବିଧାତା ଯେବେ ନବଦୃଷ୍ଟି ମୋତେ,
ହୁଅନ୍ତି ତେବେ ମୁଁ ତୁଷ୍ଟ ତୁମ୍ଭଙ୍କୁ ନିରେଖି,
ନଭୁ ଶକ୍ତି ଥିଲେ, ଯାନ୍ତି ଉଡ଼ି ତବ ପାଶେ,

ହେଉ ପଛେ ଯେତେ ଦୂର, ନ ଥିଲି ମୋ ଶ୍ରଢ,
ଶତଦଳ ତୋଳି ଯାଇ କେ ଡରେ କଣ୍ଟକେ,
କି କରିବ କ୍ଷୁଦ୍ର ପ୍ରାଣେ ଦୁର୍ବଳ ମୋ ଚେଷ୍ଟା ।
କାହିଁ ସେହି ଯୋଗବିଦ୍ୟା, ଯେ ବିଦ୍ୟାପ୍ରଭାବେ
ଥିଲି ମୋ ଭାରତମାତା ଜୀବନ୍ତା ଜଗତେ,
ଯେ ବିଦ୍ୟା ପ୍ରଭାବେ ନମେ ସର୍ବ ଦେଶ, ଜାତି,
କଳ୍ପତରୁ ଭାରତର ପୁଣ୍ୟ ପଦମୂଳେ,
ଯେ ବିଦ୍ୟା ପ୍ରସାଦେ ନର ହୁଏ କାମଗତି,
ସେ ବିଦ୍ୟା ଯଦ୍ୟପି କେହି ଦଅନ୍ତା ଶିଖାଇ
ମୋତେ, ଯାନ୍ତି ଏହି ଦଣ୍ଡେ ଉଡ଼ି ତବ କତି ।
କଠିନ ହୃଦୟ ତବ, କିପାଁ ବା ନ ହେବ;
ବନ୍ଧେ ଯେ କଠୋର ବଜ୍ରେ, ସ୍ୱତଃ କଠୋର ସେ,
ମାତ୍ର ସେହି କଠୋରତା ମଧ୍ୟେ ଅବସ୍ଥିତ
ଅମୃତର ମଧୁଚକ୍ର, ତାହା ଏକା ବନ୍ଧୁ,
ତବ ବିଶେଷତ୍ୱ, ମୋର ଗର୍ବର କାରଣ ।
ଡାକେ ମୁଁ ତୁମ୍ଭଙ୍କୁ ସଦା ଆତୁର କଣ୍ଠରେ,
ଶୁଣି ନାହିଁ ତୁମ୍ଭେ ତାହା, ଶୁଣନ୍ତି ପ୍ରତିଧ୍ୱନି—
ଆକାଶନନ୍ଦନୀ, ଯାଏ ନିଦ୍ରା ଭାଙ୍ଗି ତାର
ମୋ କାତର କୋଳାହଳେ, ଉଠି ବସେ ଖରେ ।
ବଡ଼ ହଟିଆଣୀ ଦୁଷ୍ଟା, ଲଗାଏ ସେ ହଟ,

"ବନ ଦଅ, ବନ ଦଅ" ଶୁଣି ମୋ ଭୃତ୍ୟରୁ,
ନଷେଧେ ପାପିଷ୍ଠା କହି "ନ ଦଅ, ନ ଦଅ,"
ଅମଙ୍ଗଳ-ଧୂମକେତୁ ମୋ ଭାଗ୍ୟ-ନଭେ ସେ ।
ଦେଖି ନଷ୍ଟା ପିଶାଚୀର ଏ ବ୍ୟର୍ଥ ବୈରତା
ଧିକ୍କାରେ ମୁଁ ଦୁରଦୃଷ୍ଟେ, ଦୁଃଖେ ତାପେ ଶୋକେ;
ହୋଇ ତହୁଁ ବହ୍ନିଲତ, କହେଁ ମୁଁ ଆକାଶେ
ବିନୟେ କାତରେ, ହାୟ ପୂର୍ଣ୍ଣାଶ୍ରୁ ନୟନେ,—
ଶବ୍ଦବହ ! ତୁମ୍ଭ କୋଳେ ଶବ୍ଦର ଉତ୍ପତ୍ତି—
ସ୍ଥିତି, ଲୟ, ବହ ତୁମ୍ଭେ ଭକ୍ତର ପ୍ରାର୍ଥନା
ଭକ୍ତଭାବଗ୍ରାହୀ ପ୍ରଭୁ ଆତ୍ମାରାମ ପଦେ
ବହିନିଅ ଅନଶ୍ୱର, ମୋ କ୍ରନ୍ଦନଧ୍ୱନି
ମୋ ପ୍ରାଣେଶ ପାଶେ, ଦୟା ବହି ଦୀନା ପ୍ରତି ।
କିନ୍ତୁ ବୃଥା ଏ ଯାଚଞ୍ଚା, ବିଫଳ ମିନତି,
ଚିର ମହାଶୂନ୍ୟାୟିତ ହୃଦୟ ଯାହାର,
କାହିଁ ବା ସେ ତରଳିବ ଅବଳା ବିଳାପେ ?
ତହୁଁ ତାକି କଳ୍ପନାରୁ କହେ ହାତ ଧରି,—
ଶୂନ୍ୟମୂର୍ତ୍ତେ ! ଅବାଧିତ ଗତି ତୋର ଭବେ,
ନ ପଶେ ଅନିଳ ଯହିଁ ନ ପଶେ ମୟୂଖ,
ଅବହେଳେ ତହିଁ ତୁହି ପଶି ପାରୁ ସହି,
କିସ ବା ଅସାଧ୍ୟ ତୋର, ସୃଜି ପାରୁ ତୁହି

ମୁହୂର୍ତ୍ତେକେ କୋଟି ବିଶ୍ୱ, କୋଟି ରବି ଶଶୀ,
ନଭେ ସୃଜି ସ୍ୱର୍ଣ୍ଣସର, ଫୁଟାଇ ତହିଁରେ
ସ୍ୱର୍ଣ୍ଣଶତଦଳ, ସ୍ୱର୍ଣ୍ଣକୁମୁଦ, କହ୍ଲାର ।
ଭୂତଳେ ଉଦୟ ତାର ତୋହର ପ୍ରସାଦେ ।
ନିମେଷେ ତୁ ଭ୍ରମି ପାରୁ ଅସଂଖ୍ୟ ବ୍ରହ୍ମାଣ୍ଡ,
ଯା ଲୋ ସଖି, ଦୂତୀରୂପେ ଜଳଧର ପାଶେ;
ନ ଗଣୁ ତୁ ଶ୍ରମ ଶାନ୍ତି, କି ଦୁଃଖ ତୋହର,
ତଥାପି ଯଦ୍ୟପି ହୁଏ ଭୁଞ୍ଜିବାକୁ ଦୁଃଖ,
ସହିବୁ ତୁ ତେବେ ତାହା ମୋ ଦୁଃଖ ସୁମରି,
ମହତ ଯେ, ପରଦୁଃଖ ଫେଡ଼ିବାକୁ ଯାଇ,
ନିଜେ ଦୁଃଖ ସହିବାକୁ ନୁହେ ସେ କାତର ।
ବିଶ୍ୱ-ଚକ୍ରବର୍ତ୍ତିଙ୍କର ଦୂ ତ କ ର୍ମ ସ୍ମ ରି
କାନ୍ତ ମୋର ନ ବସିବେ ନୀଚସ୍ଥାନେ କେବେ,
ବିଶେଷତଃ ଦେବତା ସେ, ନ ଛୁଅନ୍ତି ଧରା,
( ବାସନା-ବିଷବୃକ୍ଷେ ବିଦଗ୍ଧ ପାପାକ୍ତ )
ମାଟିର ଏ ଧରା ସିନା ମାଟିଦେହପାଇଁ ।
ଥିବେ ସେ ଦ୍ୱିତୀୟ ସ୍ୱର୍ଗ ହିମାଦ୍ରିଶିଖରେ,—
ଭାରତ-ମହିମା-ଶକ୍ତି ମ ହା ମା ନ ଦ ଣ୍ଡ,
ଯହିଁ ଯକ୍ଷବାଳାକୁଳ କ୍ରୀଡ଼ନ୍ତି ହରଷେ
କଷିତ-କାଞ୍ଚନ-କାନ୍ତ କାଞ୍ଚନ ଶୃଙ୍ଗରେ,

ଅର୍ଚ୍ଚନ୍ତି ଅମରୀବୃନ୍ଦ ଗୌରୀଶଙ୍କରେ—
ଗଉରୀଶଙ୍କର ଚୂଳେ, ଅର୍ପି ଗିରିଫୁଲ;
ରଜତତୁଷାରଚୂଡ ଧବଳ ଶିଖରୁଁ
ଆସି ଗିରିରାଣୀ, ତାଙ୍କୁ କରନ୍ତି ସତ୍କାର,
ତହିଁ ଯାଇ ମୋ ସନ୍ଦେଶ ଅର୍ପିବୁ ଜୀବେଶେ ।
ଯା ଲୋ ଗୃଳ, କେ ରୋଧିବ ଗତିପଥ ତୋର,
ମହାପ୍ରବଳା ତୁ ଦେବ ! ଜଗତେ ଅଜୟା,
କାମଗତି, କାମଗତି ଯଥା ପ୍ରଭଞ୍ଜନ ।
ତଥାପି ରୋଧିବ ଯଦ ଗତି ଅରଣ୍ୟାଣୀ
କଣ୍ଟକଅୟୂଧବତୀ, କହିବୁ ତାହାକୁ,—
ଘନରାଜମହିଷୀର ପ୍ରିୟ ଦୂତୀ ମୁହିଁ,
ଯେଉଁ ଘନ ତୋହର ଲୋ ଶ୍ରୀ-ସମ୍ପଦଦାତା,
ପ୍ରାଣଦାତା ପରିପୁଷ୍ଟା, ଯାହାର ପ୍ରସାଦେ
ଧରଣୀ-କୁନ୍ତଳମଣି କୁ ସୁ ମ ସୁ ନ ରୀ
ହସେ ତୋର କୋଳେ ବସି, ଯାହାର ପ୍ରସାଦେ
ଧନବତୀ, ପୁତ୍ରବତୀ, ଭାଗ୍ୟବତୀ ତୁହି,
ତାହା କାର୍ଯ୍ୟେ ବାଧାଦାନ ଉଚିତ କି ତୋର ?
ହେବୁ କି ତୁ ଅପରାଧୀ ଉପକାରୀ ପାଶେ,
ନୁହେ ତାହା ଧର୍ମ, କପାଁ ଆଚରି ଅଧର୍ମ
ଛେଦିବୁ ଆପଣା ହାତେ ଆପଣାର ଗଳା,

କହିଁ ଏ କୁବୁଦ୍ଧି ତୋର, ପାଦପପ୍ରସୂତେ,
ଜଳର ବିରୋଧୀ ହେଲେ ବଞ୍ଚିବ କି ମୀନ,
କୃତଜ୍ଞତା ପ୍ରଦର୍ଶନ କୃତଜ୍ଞର ବିଧି ।
କହିଲେ ତୁ ଏହା, ନଷ୍ଟେ ଛାଡ଼ିବ ସେ ପଥ ।
ରୋଧିଲେ ଶିଖରିକୂଳ ଗତିପଥ ତୋର,
ପ୍ରକାଶିବୁ ପରାକ୍ରମ, କେ ପାରିବ ଛିଣ୍ଡି :
ବିଶ୍ୱବିଜୟିନୀ ଶକ୍ତି ଅଟେ ତୋର, ଦେବ !
ଦହିବୁ ତା କଳେବର ସୃଜି ଦାବାନଳ,
ସୃଜି ବଜ୍ର ବିଚୂର୍ଣ୍ଣିବୁ ମସ୍ତକ ତାହାର,
ସୃଜିବୁ ଅନନ୍ତ ସେନା, ସୃଜିବୁ ଆୟୁଧ,
କରିବୁ ସମର, ସୃଜି ରୁଦ୍ର ପ୍ରଭଞ୍ଜନ,
ସମୂଳେ ଉପାଡ଼ି ତାକୁ ଫିଙ୍ଗିବୁ ସୁଦୂରେ ।
ମଣିବୁ ତୁ ଅନୁଚିତ ଯଦି ଶୁଭକାର୍ଯ୍ୟେ
ଅନର୍ଥ ଘଟଣା, ତେବେ ସାଧିବୁ କୌଶଳେ
କର୍ମ,— ନ ଭାଙ୍ଗିବ ଯଷ୍ଟି, ନ ମରିବ ସର୍ପ ।
କହିବୁ ଦେଖାଇ ଭୟ, ଘନଦୂତୀ ମୁହିଁ,
ଯେଉଁ ଘନ ସୁରେଶ୍ୱର ମଘବାବାହନ;
କି ବର୍ଣ୍ଣିବି ଅଧିକ ମୁଁ ମହେନ୍ଦ୍ର ପ୍ରଭାବ,
ଭୁକ୍ତଭୋଗୀ ସ୍ୱୟଂ ତୁହି, ଭୁଲିଥାଉ ଯଦି,
ସ୍ମର ପକ୍ଷଚ୍ଛେଦ ଦଶା, ଅବଧି ସେ କ୍ଷତ

ଅଶୁଷ୍କ ଶସ୍ପରେ ତୋର, ଝରେ ତହିଁ ସଦା
ଝରରୂପେ ଅସମ୍ଭାଳେ କଲ୍ଲଲ ପ୍ରବାହ ।
ଜାଣିଲେ ଶଚୀଶ ଏହା, କାହିଁଛି ନିସ୍ତାର,
ବଜ୍ରବାଣେ ଶିରଚ୍ଛେଦ ହେବ ତୋର ସ୍କନ୍ଧ ।
କେ ନ ଡରେ ଇନ୍ଦ୍ରେ, ପୁଣି କେ ନ ଡରେ ବଜ୍ରେ,
କଲ୍ପନେ, ଶୁଣିଲେ ବୃଷ୍ଣୋ ଉର୍ଦ୍ଧନା ତୋହର,
ଉପୁଜିବ ହାସ ଚିତ୍ତେ, ହେବେ ସେ ଅନ୍ତର ।
ଚଳିଯିବୁ ତହୁଁ ଖରେ, ଦେଖିବୁ ଦୂରରୁ
ଯୋଗିବର ହିମାଳୟେ, ସାର୍ଥକବୁ ନେତ୍ର,
ହସି ଉଠୁଥିବ ଦେହେ କୁସୁମର ହାସ,
ଶୋଭୁଥିବ ତାହା ଉକ୍ତ ବୈଷ୍ଣବ ଶରୀରେ
ତିଳକର ମୁଦ୍ରା ଯଥା, ହରିନାମାଙ୍କିତ ।
ଥିବେ ତା' ଚୂଡ଼ାରେ ଘନ, ପ୍ରାଣଧନ ମୋର,
ଶୋଭୁଥିବେ ଶୈଳଶିରେ ଶୁକ୍ଳରୂପ ଧରି,
ଦିଶୁଥିବେ ଯଥା, ଆହା, ଧୂର୍ଜଟି ଜଟାରେ
ରହିଛି ବନ୍ଧିଲେ ଲାଗି ସୁରଧୂନୀ ଫେନ ।
ନ ଦେଖିବୁ ଦୂରୁ ଯେବେ ତହିଁ ଧୂମକାୟେ *
ନ କରିବୁ ବ୍ୟର୍ଥ ଶ୍ରମ ଗିରି ଆରୋହଣେ,
ଉଠିବୁ ଆକାଶେ ତହୁଁ, ନ ଛାଡ଼ିଲେ ପଥ

* ମେଘ ।

ବାୟୁ, ମହାବଳୀ ଶୂର, କହିବୁ ତାହାଙ୍କୁ,—
ନୀରଦବାହନ ତୁହ, ମୁଁ ତା' ପ୍ରିୟା ଦୂତୀ,
ବାତୁଳ କି ଅନଳ ତୁ, ପ୍ରଭୁପତ୍ନୀ କାର୍ଯ୍ୟେ
ବାଧା ଦେଇ ହେବୁ କି ରେ ପ୍ରଭୁପଦେ ଦ୍ରୋହୀ ?
ଶୁଣିଲେ ଏ କଥା, ବାୟୁ ହୋଇଯିବ ଆଡ଼,
ଉଠିବୁ ତୁ ଊର୍ଦ୍ଧ୍ୱନଭେ, ତା ଊର୍ଦ୍ଧ୍ୱେ, ତା ଊର୍ଦ୍ଧ୍ୱେ,
ଅନ୍ୱେଷିବୁ ଶୂନ୍ୟେ ଶୂନ୍ୟେ ମହାଶୂନ୍ୟେ ଉଡ଼ି ।
ଭେଟିଲେ ନୀରଦବରେ, କହିବୁ ବୁଝାଇ,—
ଶୃଙ୍ଗାରଙ୍କୁଣୀଧନ ହେ ସୁନ୍ଦର ଘନ,
ରଖିବାକୁ ବିରହିଣୀ ଯକ୍ଷିଣୀକୁ ଯାଇ
ନାଶିବ କି ପରଗୃହୀ ପକ୍ଷିଣୀ ଜୀବନ,
କେଉଁ ଶାସ୍ତ୍ରନୀତି ଭଲ, ଆଶ୍ରିତେ ସଂହାର
ପର ପ୍ରାଣରକ୍ଷା, କାହୁଁ ଶିଖିଲ ଏ ବିଦ୍ୟା,
ମରିବ ସେ ଯଦି, ତେବେ କାହାକୁ ଟି ଲଜ୍ଜା,
ତୁମ୍ଭ ଅଭାବରେ ହାୟ, ହୋଇଛି ତାହାର
ପରମସଙ୍ଗାଲୀ ତୁମ୍ଭ ସ୍ମୃତି,-ଅଶ୍ରୁ,-ବେଦନ,
ସ୍ମୃତି, ଅଶ୍ରୁ ହୋଇଯାଇ ବହୁଛି ନୟନୁ
ତାର ଅବିରଳଧାରେ, କି ଦିବା କି ଯାମୀ ।
ହରିଛି ନିୟତି ସବୁ ସୁଖ ତାର, ମାତ୍ର
ହରି ନାହିଁ ସ୍ମୃତି, ଚିରସଙ୍ଗିନୀ ସେ ତାର,

ଛଡ଼ିଯାନ୍ତି ମହୀରୁହେ ରକ୍ଷକ, କୁସୁମ,
ଫଳ, କିନ୍ତୁ ଛଡେ ନାହିଁ ଛାୟା କେଉଁକାଳେ,
ଛଡ଼ିଗଲ ତୁମ୍ଭେ, ଯଦି ଛଡ଼ିଯାନ୍ତା ସ୍ମୃତି,
କେମନ୍ତେ ବଞ୍ଚନ୍ତା ତେବେ ଅସାହା ଅବଳା ।
ହେ ଜୀବନବନ୍ଧୁ, ତୁମ୍ଭେ ଜଗତ ଜୀବନେ
ଜୀଆଅ ଜୀବନ ଦାନେ, ମଲେ ତୁମ୍ଭ ଲାଗି
ତୁମ୍ଭ ପ୍ରିୟା, ଏ ସୁଖ୍ୟାତି ରହିବଟି ତବେ ?
ତପ୍ତ ଅଶ୍ରୁ, ତପ୍ତ ଶ୍ୱାସ, ତପ୍ତ ହାହାକାର
ହୋଇଛି ସମ୍ବଳ ତାର, କି କରିବ ହାୟ,
ଦୁଃଖ-ଦେବତାର କ୍ରୋଧଦତ୍ତ ଦାନ ତାହା
ସହିଛି ନୀରବେ ସବୁ ଅଦୃଷ୍ଟେ ଆଦର ।
ପଣ କରି ବିରହିଣୀ ବସିଥିଲା ଦିନେ,—
ଆଣିଦେଲେ ତୁମ୍ଭଙ୍କୁ କେ, ପୁରସ୍କାରରୂପେ
ଅର୍ପିବ ଜୀବନ ତାରୁ, ଭାବିଲା ପଶ୍ଚାତେ
ତୁମ୍ଭେ ତ ଜୀବନ ତାର, ଦେବ କି ତୁମ୍ଭଙ୍କୁ,
ଭାଙ୍ଗିଲା ପ୍ରତିଜ୍ଞା ତହିଁ, ବଦଂଶି ରସନା ।
କି କହିବ ବନ୍ଧୁଓଲୋ ମୁଁ ମଘବାବାହନ,
ଦୈନନ୍ଦିନ ଜୀବନର ସବୁ ଚିନ୍ତା ତାର
ଅର୍ପିଛି ସେ ତୁମ୍ଭ ପଦେ, ତା' ଚିନ୍ତା-ମୂଳରେ
ତୁମ୍ଭ ପ୍ରତିବିମ୍ବ ଭିନ୍ନ ପଡ଼େ ନାହିଁ କିଛି ।

ମନ-ମୂର୍ତ୍ତିଯନ୍ତ୍ରେ* ସଦା ଉଠେ ତବ ମୂର୍ତ୍ତି ।
ଘନ, ତୁମ୍ଭ ପ୍ରଣୟିନୀ ବସି ଘନ ବନେ,
କେତେ ଯେ ବିକଳେ କାନ୍ଦେ, ଜାଣେ ତାହା ମୁହିଁ,
ଆବର ଜାଣନ୍ତି ଯେହୁ ବିଶ୍ୱ-ଅନ୍ତର୍ଯ୍ୟାମୀ ।
ଶୁଣି ମତ୍ତମାତଙ୍ଗର ଗମ୍ଭୀର ଗର୍ଜନ,
ଚମକି ଚୌଦିଗେ ଗୃହେଁ, ତୁମ୍ଭ ଧ୍ୱନି ମଣି,
ଜନ୍ମାଏ ମୟୂରପୁଞ୍ଜ ଇନ୍ଦ୍ରଧନୁ ଭ୍ରାନ୍ତି,
ବାନ୍ଧ ପ୍ରାଣେ ଦୃଢ଼ ଆଶା, ଖୋଜବୁଲେ ତହୁଁ
ଅନନ୍ତ ଅନନ୍ତ ଗର୍ଭେ, ଉଡ଼ି ଇତସ୍ତତଃ,
ଅବଶେଷେ କ୍ଳାନ୍ତିବଶେ ହୁଏ ସେ ମୂର୍ଚ୍ଛିତା,
ନ ପାରିବ କହି ଆଉ ଅଭାଗୀ ଦୁର୍ଦ୍ଦଶା,
ସ୍ମରିଲେ ତା' ହୁଏ ବକ୍ଷ ବିଦୀର୍ଣ୍ଣ ଶତଧା,
ତୁମ୍ଭ ରୁଦ୍ର ବଜ୍ରାଘାତେ ଗିରିଚୂଡ଼ା ଯଥା,
ଭୁଲ ସେ ଦୁର୍ଗତି ତାର ଦେଖିବ ସ୍ୱନେତ୍ରେ ।
ଏସନ ଉଆର, ନାଥ, ଯେତେ କଲ୍ପନାରୁ,
କିନ୍ତୁ ହାୟ, କି କହିବ ଫୁରୁ ନାହିଁ ଭାଷା,
ନ ପାଇ ସେ ତୁମ୍ଭ ଭେଟ ଫେରି ଅସେ ଦୁଃଖେ ।

ଲଗିରହିଅଛ ତବ ଶୋଭା ମୋ ନୟନେ,
ଲଗିରହେ ଗନ୍ଧ ଯଥା ହସ୍ତେ, ହେଲେ ଫୁଲ

* ଫଟୋଗ୍ରାଫ୍ ।

ହସ୍ତଚ୍ୟୁତ । ହସେ ଯେବେ ଚପଳୀ ସୁନ୍ଦରୀ
ତୁମ୍ଭ କୋଳେ, ତରୁକୋଳେ ଯଥା କୁସୁମିତା
ଲତା, ଲମ୍ବିଥାଏ ବକ୍ଷେ ବିପୁଳ ଗୌରବେ
ଇନ୍ଦ୍ରଧନୁ-ବରମାଲ୍ୟ,—ଦିଗ୍‌ବଧୂପ୍ରଦତ୍ତ,
କି ସୁନ୍ଦର ସେ ଲାବଣ୍ୟ, ସେ ଦୃପ୍ତଗରିମା,
ଚିତ୍ରାଙ୍କିତ ପ୍ରାଣେ ମୋର ଅଦ୍ୟାପି ହେ ଦେବ,
ଅକ୍ଷୟ ମହିମା ଧରି, ଗୃହେଁ ମୁଁ ତୁମ୍ଭଙ୍କୁ
ଅତୃପ୍ତ ପିପାସାତୁର ନିର୍ନିମେଷ ନେନେ
ଆକୁଳ ଆଗ୍ରହେ, ସେହି ଶୋଭାସ୍ମୃତି ହେତୁ,
ଏତେ ଦୁଃଖ, ତେବେ ଅଛି ମୁଗ୍ଧ ଏ ଜୀବନ ।
ଆଷାଢ଼ ମାସରେ ଲାଗେ ମହାପୂଜା ତବ,
ପ୍ରାବୃଟ-ପୂଜାରୀ, କରେ ବିଦ୍ୟୁତେ ଆଳତି,
ବଜାଏ ମୃଦଙ୍ଗ ବଜ୍ର, ଦେଖେଁ ମୁଁ କୌତୁକେ,
ଦେଖେ ଯଥା କମଳିନୀ ମୁଗ୍ଧନେତ୍ରେ ସୂର୍ଯ୍ୟେ,
ଅଥବା ଶାରଦଲକ୍ଷ୍ମୀ ଉଜ୍ଜ୍ୱଳ ଅଗସ୍ତ୍ୟେ,
ଚପଳା ସପତ୍ନୀଦ୍ୱେଷ ବହି ମୋ ଉପରେ
ଢାଳୁଥାଏ କଣ୍ଠାଗ୍ରର ଅନଳପ୍ରବାହ,
କିନ୍ତୁ ମୁଁ ନ ଗଣେ ତାହା, ନ ଡରେଁ ତିଳଣେ,
କରକାପାତରୁ ମଣି ପୁଷ୍ପବୃଷ୍ଟି ପ୍ରାୟ,
ତୁଚ୍ଛ ମଣି କୋଟିକଷ୍ଟେ, କୋଟି ମୃତ୍ୟୁଭୟେ,

ବୁଲୁଥାଏଁ ଉଡ଼ି ତବ ଛାୟା ତଳେ ତଳେ,
ଚୋପାଏ ସଲିଳ ଅଣେ, ଦଅ ତୁମ୍ଭେ ତାହା,
ଅଯାଚିତେ ପ୍ରିୟବର, ମଣେ ମୁଁ ତାହାକୁ
ବିଧାତାର କୃପାମୃତ ମହାଦାନ ପ୍ରାୟ ।
ସେହି ମହୋତ୍ସବ ସ୍ମୃତି ଦହୁଛି ଅନ୍ତର
ଏବେ, କୋଟରାଗ୍ନି ତରୁବରେ ଯଥା, ତହୁଁ
ଆତ୍ମାର ଗୋପନ ବ୍ୟଥା ନ ପାରି ସମ୍ଭାଳି,
ଲେଖିଲି ଏ ଲେଖା, ଅଶ୍ରୁଜଳେ, ଲୁପ୍ତାକ୍ଷରେ,
ଚନ୍ଦନ ପଲ୍ଲବେ, ହୁଏ ନାହିଁ ପଢ଼ି ଏହା
ନେତ୍ରେ, ପଢ଼ି ହୁଏ ମାତ୍ର ହୃଦୟ-ନେତ୍ରରେ,
ହୃଦୟବାନଙ୍କ ମଧ୍ୟେ ଶ୍ରେଷ୍ଠ ତୁମ୍ଭେ ଯେଣୁ,
ତେଣୁ ମୋ ଭରସା, ପତ୍ର ପଢ଼ିବ ନିଶ୍ଚୟ ।



# ଚତୁର୍ଥ ସର୍ଗ ।



( ନିଶାନାଥ ପ୍ରତି ନିଶୀଥିନୀ । )

ପଡ଼େ କି ଏ ଦାସୀ ମନେ, ହେ କୁମୁଦକାନ୍ତ,
ମହାକାଳ-ଦେବକନ୍ୟା ଯାନା ନିଶୀଥିନୀ,
ଭୁଲିଥାଅ ଯଦି, ଯେବେ ପ୍ରଣୟଚଷ୍ଟାର
ତବ ପ୍ରିୟ ପ୍ରଣୟିନୀ କୁମୁଦିନୀ ଦେହୁ
ଯେବେ ପାଖୁଡ଼ାଏ, ତହିଁ ଲେଖିଲି ପତ୍ରିକା
ଚନ୍ଦନ-ଆସବେ, ତବ ସ୍ମରଣ ନିମନ୍ତେ ।
ଗୁଡ଼ାଇଛି ସେ ପତ୍ରରେ ସପ୍ରଫେସ କରି
ପ୍ରଣୟ କୁସୁମହାର, ଗୁନ୍ଥା ପ୍ରୀତି-ସୂତେ ।
ଫୁଟିଥିଲା ସେ କୁସୁମ ପ୍ରଣୟ-କାନନେ,
ଅର୍ପିଲି 'ତା' ପ୍ରଣୟର ଉପହାରରୂପେ ।
ପିତା ମୋର କାଳଚକ୍ର, ସ୍ୱଭାବେ ଅସୀମ,
ଅମର, ଅମର ଯଥା ଅନନ୍ତ ଅମ୍ବର,
ଅବର୍ଗ ଅଜେୟ; ଯଥା ମହାକାଳ ସଂତ୍ୟ,
ଅତୁଲପ୍ରତାପୀ, ତାର ଅଙ୍ଗୁଳିସଙ୍କେତେ
ଚଳେ ବିଶ୍ୱ, ସର୍ବେ ବିକା ତାହା ପଦେ ସଦା,
ମାତ୍ର ମୁଁ ତା କନ୍ୟା, ପିତୃ-ଗୌରବ-ଗର୍ବିତା,

ବିକା ତବ କାନ୍ତପଦେ । କାନ୍ତକାନ୍ତ, ଘେନ
ସଦୟେ ମିନତି ମୋର, ବିକେ ହୁଅ ଖରେ,
ରଖିଛି ମୁଁ,—ତବପ୍ରାଣା ତବ ପ୍ରେମାଧୀନା,
ସଜାଡ଼ି ଯତନେ ବହୁ ପୁଷ୍ପ, ତାରି-ଦୀପ,
ଧୂପରୂପେ ପୁଷ୍ପଗନ୍ଧ, ପୂଜିବି ପୟର,
ହୃଦୟର ପ୍ରେମ-ସୁଧା ଅର୍ପିବି ନୈବେଦ୍ୟ;
ହୋଇଛି ଦେବତାଶୂନ୍ୟ ହୃଦ-ସିଂହାସନ,
ହେ ଦେବତା, ଖରେ ତହିଁ କର ଅଧିଷ୍ଠାନ ।
ସଜାଇବି ମନୋମତ କୁସୁମଭୂଷଣେ
ଶ୍ରୀଅଙ୍ଗ ତୁମ୍ଭର, ଦେବ, ପିନ୍ଧାଇବି ଶିରେ
କୁସୁମ-କିରୀଟ, କରେ କୁସୁମ-ବଳୟ,
କୁସୁମ ଅଙ୍ଗଦ, କର୍ଣ୍ଣେ କୁସୁମ କୁଣ୍ଡଳ,
ଲମ୍ବାଇବି ବକ୍ଷେ କୋଟି କୁସୁମର ହାର
କୁସୁମକେଶରେ ଗୁନ୍ଥା, ଲମ୍ବାଅ ଯେସନ
ଚନ୍ଦ୍ରିକା-ହୀରକହାର ତୁମ୍ଭେ ମୋ ଉରସେ,
ଆଉର ମୁଁ ନିଜେ ହୋଇ କୁସୁମ-ନୂପୁର
ଖଚିବି ପୟରେ, ମୋର ଶରସାଧ ଏହା ।
ତୁମ୍ଭ ସେବାଦାସୀ ମୁହିଁ; ଭାଗ୍ୟଦୋଷେ ଏବେ
ହୋଇଛି ମନର ଦାସୀ, ପାଳେ ତାର ଆଜ୍ଞା ।
ଭାଗ୍ୟ ଯଦି ହୋଇଥାନ୍ତା ପଦାର୍ଥବିଶେଷ,

ତେବେ ତାକୁ ଦଗ୍‌ଧ କରି ଶ୍ମଶାନ ଅନଳେ,
ନିକ୍ଷେପନ୍ତୁ ଭସ୍ମ ତାର ଚଣ୍ଡାଳ ଆଳୟେ ।
କିପାଇଁ ପ୍ରଭାତ ଆସେ, ଅର୍ପିବାକୁ ପର
ଦୁଃଖ ଏ ଦୁଃଖିନୀ ପ୍ରାଣେ, କିଆଁ ହୁଏ, ହାୟ,
ମିଳନ ସ୍ୱଳ୍ପାୟୁ, ଯଥା ଅଭିଶପ୍ତ ଜନ,
ବଧିର ବଚନ ବଧି, କେ ବୁଝିବ ତାହା,
କଲ୍ପ ଯେ କାନନ-ଲକ୍ଷ୍ମୀ କୁସୁମେ କ୍ଷୀଣାୟୁ,
ସୃଜିଲ୍ପ ଆବର ବଜ୍ରବଧୂ ବିଜୁଳିକି
( କାନ୍ତିକୁଳଠାକୁରାଣୀ ) କ୍ଷଣପ୍ରଭା କରି,
ସବୁ ସୁସମ୍ଭବ ସେହି ବିଧି ବିଧାନରି,
ସୁଷମା ସ୍ୱଳ୍ପାୟୁଷ୍ମତୀ ସୃଷ୍ଟିରେ ତାହାରି ।
ଆଣିଦିଏ ଉଷା ନିତ୍ୟ ସମସ୍ତଙ୍କ ଭାଗ୍ୟେ
ନବ ଆୟୁ, ନବ ମୃତ୍ୟୁ ଦଗ୍‌ଧ ଭାଗ୍ୟେ ମୋର;
ହରି ସେ ମୋ ହର୍ଷ, ଯାଏ ହାହାକାର ଦେଇ ।
ନବ ପ୍ରଭାତର ନବ ମଙ୍ଗଳ-ମୟୂଖେ
ଉଜ୍ଜ୍ୱଳ ସକଳ ମୁଖ, ମଳିନ କେବଳ
ମୁଁ, ମୋ ପ୍ରାଣସଖୀ—ଦୀପଶିଖା, କୁମୁଦିନୀ,
ମଳିନ ଯେସନ ତୁମ୍ଭେ ରାହୁଗ୍ରାସ କାଳେ ।
ହେଲେ ସୁଦ୍ଧା କୁମୁଦନୀ ସପତ୍ନୀ ମୋହର,
ସେବେ ମୋତେ ଭକ୍ତିଭରେ ଅଗ୍ରଜାସଙ୍କାଶ,

କେମନ୍ତେ ଶୁଝିବ ଗୁଣ ତାର, ଗୁଣବତୀ
ଚିର ହିତୈଷିଣୀ ମୋର, ମୋ ଦୁଃଖେ ଦୁଃଖିନୀ,
ମିଶାଏ ମୋ ତପ୍ତାଶ୍ରୁରେ ତପ୍ତ ଅଶ୍ରୁଧାର,
ଦୀର୍ଘଶ୍ୱାସେ ଦୀର୍ଘଶ୍ୱାସ, ସମ ଦୁଃଖିନୀ ସେ
ମୋର, ମାନି ଭୁଲି ନିଜ ଦୁଃଖ—ଦୁର୍ବିସହ,
ନିଏ ମୋର ଦୁଃଖ ନିଜ ଶରୀର ମଧ୍ୟକୁ,
ନେଲା ଯଥା ନିଜ ଦେହେ ପିତୃଜରା ପୁରୁ,
ସୁଖବେଳେ ମୋ ହାସରେ ମିଶାଏ ସେ ହାସ।
ଏକେ ମୁଁ କୁରୂପା, ଦୁଯେ ସଉତୁଣୀ ତାର,
ତଥାପି ସେ ବହେ ନାହିଁ ଈର୍ଷା କିମ୍ବା ଘୃଣା,
ପ୍ରଣୟ ନ ଖୋଜେ ରୂପ, ଖୋଜେ ସେ ହୃଦୟ,
ଯେ ପ୍ରଣୟ ରୂପଜ, ସେ ସାରଶୂନ୍ୟ, ମୋହ,
କୁତ୍ସିତ ସେ, ଗ୍ରାମ୍ୟପ୍ରୀତି ନାମାନ୍ତର ତାର,
ନାହିଁ ଯହିଁ ଆତ୍ମଦାନ, ନୁହେ ସେ ପ୍ରଣୟ।

ଆସ ବନ୍ଧୁ, ତୁମ୍ଭ ବିନା ଏ ଦଗ୍ଧ ହୃଦୟ
ଅନ୍ଧକାର ମୋର, ଦୁଷ୍ଟ ଅନ୍ଧକାର, ଲୁଚେ
ତୁମ୍ଭ ଡରେ ଗିରିଖୋଲେ—ଅଜ୍ଞାନ-ଅନ୍ତରେ,
ଅନୁପସ୍ଥିତିରେ ତବ ଗ୍ରାସେ ଆସି ମୋତେ।
ଉଦ୍ଧାର ତା' ଗ୍ରାସୁ ମୋତେ, ଉଦ୍ଧାରିଲେ ଯଥା

ଅନ୍ତର୍ଯ୍ୟାମୀ ନାରାୟଣ ଗ୍ରାହ୍ୟଗ୍ରାହୁଁ ଗଳେ ।
ଦେଖି ମୋ ଦୁର୍ଗତି, ତମଃକୃତ, କାନ୍ଦେ ବାୟୁ
ହାୟ ହାୟ ରବେ, କାନ୍ଦେ ଶିବା—ମୋ ପ୍ରହରୀ,
ଛାଡ଼ି ଉଚ୍ଚେ ହେ ହେ ରଡ଼ି, କାନ୍ଦେ ବନସ୍ପତି
ତୁଷାର କଣିକା ବ୍ୟାଜେ ବର୍ଜି ପତ୍ର-ନେତ୍ରୁଁ
ସମବେଦନାର ଅଶ୍ରୁ, ମହାମୂଲ୍ୟବାନ,
ଅମରବାଞ୍ଛିତ ତାହା, ତୀର୍ଥ ଜଳୁଁ ପୂତ ।
କେତେ ନତି କେତେ ସ୍ତୁତି କରେଁ ମୁଁ ଅନ୍ଧାରେ,
ଜନ୍ମେ ନାହିଁ ଦୟା ତେବେ ମସ୍ତରହୃଦୟେ,
ଲେପିଲେ ଦୁରନ୍ତ ଦେହେଁ କର୍ପୂର ଚନ୍ଦନ,
ହୁଏ ସିନା ପ୍ରକାଶିତ ଆତ୍ମନବୋଧତା,
ପ୍ରତି ଲୋମକୂପ ଯାର ପୂର୍ଣ୍ଣ ପୂତିଗନ୍ଧେ,
କିରୂପେ ବା ପ୍ରବେଶିବ ସୁବାସ ତହିଁରେ ?
ଆସ ପ୍ରଭୁ, ଅର୍ପି ଭଗ୍ନେ ସମୁଚିତ ଦଣ୍ଡ,
କୋଟିମୁନା ମୟୂଖାସ୍ତ୍ରେ ବିଦାର ତା' ପିଣ୍ଡ,
ଢାଳି ଦିଅ ସବୁ ହିମ, ଯା ଅଛି ଭଣ୍ଡାରେ,
ସେ ପାଷଣ୍ଡ ମୁଣ୍ଡେ,. ମରୁ ଦୁର୍ବୃତ୍ତ ପିଶାଚ ।
ରଣଜୟୀ ବୀର ପ୍ରାୟ ଆସ ନାଥ ଝରେ,
ଲମ୍ବାଇ ବିଜୟମାଳ୍ୟ—ତାରାବଳୀ ଛଳେ
ବିଜୟଗୌରବ-ସ୍ଫୀତ ବକ୍ଷୋଦେଶେ ତବ,

ବନ୍ଧାଇବ ତୁମ୍ଭଙ୍କୁ ମୁଁ ଖଦ୍ୟୋତ-ପ୍ରଦୀପେ,
ଜଳ କର ରଖିଅଛି ପ୍ରାଣେ ତରଳାଇ,
ଧୋଇଦେବ ତହିଁ ତବ ଦେହୁଁ ଅସ୍ୱକ୍ଷତ,
ଅଙ୍ଗଲଗ୍ନ ଶୁଷ୍କରକ୍ତ—ପାଣ୍ଡୁର କଟୁଭାଉ,
ଅଁଭାସେ ଯା ଅଙ୍କେ ତବ କଲଙ୍କସଙ୍କାଶ,
ଦାସୀର ଶୀତଳ କର ପରଶେ, ପ୍ରାଣେଶ,
ଦୂର ହେବ ରଣପ୍ରାପ୍ତ ଶ୍ରୀଅଙ୍ଗ ଅଯ୍ତ୍ନାସ ।
ଗୃହିଁ ଗୃହିଁ ଗଭ ପଥ ଅମାବାସ୍ୟା ଦନ
ହୁଏ ଚକ୍ଷୁତାସ୍ୱ ମ୍ଳାନ, ଶୁଖେ ନେତ୍ରୁ ନୀର,
କେତେ ଯେ ଅଶଙ୍କା ଗଣେ, କି କହିବ ତାହା,
ହାୟ୍ଲ, ଯୋଦ୍ଧା ମନେ ଆଗେ ଆସେ ପାପଚନ୍ଦ୍ରା,
ଭାବେଁ ଅବା ଆକ୍ରମଣ କଲା ଦୁଷ୍ଟ ରାହୁ,
ପ୍ରେମର ସ୍ୱଭାବ, ତାହା ଯେତେ ହୁଏ ଗାଢ଼,
ତେତେ ସେ ଆଶଙ୍କା ଅଣେ, ଅନୁପସ୍ଥିତରେ
ପ୍ରେମିକ ପ୍ରେମିକା ମନେ, କେ ନ ଜାଣେ ଏହା ।
ଊର୍ଦ୍ଧ୍ୱେ ଗୃହିଁ ବ୍ୟୋମପଟେ ଦେଖେଁ ତବ ଲିପି,
ଲଭେଁ ତହୁଁ ସ୍ୱତଃ ହୃଦେ କ୍ଷଣିକ ଆଶ୍ୱାସ;
କି ସୁନ୍ଦର ଅହା, ତବ ତାରା-ହେମଲିପି,
ତଳ ତଳ ତାହା ପ୍ରେମେ, ଭାବ-ଗୌରବରେ,
ଉଠି ଆସେ ଭଷା ତହୁଁ ରୂପ ପ୍ରାଣ ଧରି,

କିନ୍ତୁ ନାଥ, ଯେତେହେଲେ ଲିପିମାତ୍ର ତାହା,
ଲିପିରେ କି ଦ୍ରବେ ଆତ୍ମା, ଦର୍ଶନ ବ୍ୟତୀତ ।
ଶେଷେ ପ୍ରାର୍ଥୀ ପ୍ରତୀଚୀକି କହେ ମୁଁ ସମ୍ବୋଧି,
"ଫେଡ଼ ଫେଡ଼ ହୈମଦ୍ୱାର ଲୋ ଦିଗସୁନ୍ଦରି,
ଦେଖିବି ମୁଁ ପ୍ରାଣନାଥେ, କଲେ ତୁମ୍ଭେ ଦୟା।"
ଏହିରୂପେ ଧାଇଁ ଧାଇଁ ତୃଷ୍ଣା ପଶ୍ଚାତେ,
ଛାୟା ପଛେ ଶିଶୁପ୍ରାୟ, ହୁଏଁ ଅବସନ୍ନ,
କିନ୍ତୁ ହାୟ, କି କହିବି, ଯାଏ ବକ୍ଷ ଫାଟି,
ଆଶା ହୁଏ ଆଶୀବିଷ ଭାଗ୍ୟଦୋଷେ ମୋର,
ଯେଉଁ ଆଶା ଆଣିଦିଏ ସଂକଳ୍ପ-ଅମୃତ,
ସେହି ଶେଷେ ତାଳଦିଏ ପ୍ରାଣେ ତୀବ୍ର ବିଷ,
ଅନନ୍ତର ଆସେ ଉଷା, ବିଶ୍ୱବିନୋଦିନୀ,
ଭାଙ୍ଗିଯାଏ ଖରେ ମୋର ଜାଗ୍ରତ ସ୍ୱପନ,
ଗମେ ନିଜ ସ୍ଥାନେ ତହୁଁ ତେଜି ଦୀର୍ଘଶ୍ୱାସ ।
କେମନ୍ତେ ପାସୋରି ଭଲା ରହି ଶଶଧିକ,
ପ୍ରେମିକ ପ୍ରେମିକା ପାଶୁଁ ନିବସେ କି ଦୂରେ,
ହୁଏ ନାହିଁ କ୍ଷଣେ ମାତ୍ର ଅନ୍ତର ଗଗନି
ଧରଣୀ ସକାଶୁ, ବରଂ ଧରି ସଦା କୋଳେ,
ଟାଙ୍ଗିଥାଏ ଶିରେ ତାର ନୀଳ ଚନ୍ଦ୍ରାତପ ।
ନିରନ୍ତ୍ର ତାଙ୍କର ପ୍ରେମ ନିରନ୍ତ୍ର ମିଳନ ।

କେଉଁ ମହାବିଦ୍ୟାବଳେ ଚନ୍ଦ୍ରିକାରୂପସୀ
ନେଲ ତବ ମନ ଧରି, ଦିଅନ୍ତା ଶିଖାଇ
ଯଦି କେହି ମୋତେ ଥରେ ସେ ମଙ୍ଗଳବିଦ୍ୟା,
ତେବେ ମୁଁ ଆତ୍ମାରେ ଆତ୍ମା ମିଶାଇ ଅଭେଦେ,
ନିଅନ୍ତି ତୁମ୍ଭଙ୍କୁ କରି ଚିର ଆପଣାର ।
ରହି ସୁଦ୍ଧା ତୁମ୍ଭେ ବିଧୁ, ଆଦର୍ଶ ପ୍ରେମିକ
ଶିବଶିରେ, ନ ଶିଖିଲ ପ୍ରେମର ମାହାତ୍ମ୍ୟ,
ହର ଗୌରୀଙ୍କର ପ୍ରେମ, ଅଦର୍ଶ ପାବନ,
ଅବିଚ୍ଛେଦ ତାହା, ନାହିଁ ତହିଁ ଟିଳେ ଫାଙ୍କ,
ବିଚ୍ଛେଦର ସୂକ୍ଷ୍ମସୂତ୍ର ନ ପ୍ରବେଶେ ତହିଁ,
ଅର୍ଦ୍ଧହର, ଅର୍ଦ୍ଧଗୌରୀ, ବେନି ଏକ ମୂର୍ତ୍ତି ।

ଗ୍ରାସିଲେ ଦୁରନ୍ତ ରାହୁ, ହେ ବିଶ୍ୱସୁନ୍ଦର,
ତୁମ୍ଭର ସୁନ୍ଦର ତନୁ, କାନ୍ଦେ ମୁଁ ଝୁରିବେ,
ମାତ୍ର ଆଚ୍ଛାଦିଲେ ଘନ, ଆସେ ନାହିଁ ଅଶ୍ରୁ
ଦେବାକୁ ପ୍ରବୋଧ ମୋତେ, ଝରି ଦଗ୍‌ଧ ନେତ୍ରୁ,
ଶୋଷିନିଏ ତାହା ଘନ, ଶୋଷଣନିପୁଣ,
ଶୋଷି ପାରେ ଯେ ବିରାଟ ସୀମାଶୂନ୍ୟ ସିନ୍ଧୁ,
ମୋର ଅଶ୍ରୁବିନ୍ଦୁ ଛାର କେତେମାତ୍ର ତାରୁ ।
ଶିଶିର ସମ୍ପଦ ମୋର, ସେହି ମୋର ଅଶ୍ରୁ,

ନ ଥାଏ ସେ କେବେ ମୋର ମେଘାଚ୍ଛନ୍ନ ରାତେ ।
ସେ ଦିନ ମୁଁ ପିନ୍ଧେ ନାହିଁ ତାରା-ଅଲଙ୍କାର,
କି ଲୋଡ଼ା ବା ଅଲଙ୍କାରେ, କି ଲୋଡ଼ା ସୁବେଶେ,
ତୁମ୍ଭେ ଏକା ଜୀବନର ସ୍ୱର୍ଣ୍ଣମଣି ମୋର,
ତବ ସ୍ପର୍ଶେ ହୋଇଛି ମୁଁ ବାରବାଣୀ ସୁନା,
ପତି କି ମହାର୍ଘ ରତ୍ନ ମୃଣ୍ମୟ ବିଶ୍ୱରେ,
ଜାଣେ ତାହା ଏକା ସିନା ସତୀ—ପତିପ୍ରାଣା,
ପତି ଯାର ଦେବଦତ୍ତ ଗୌରବଭୂଷଣ,
ଧାତବ ଭୂଷଣ ସିନା ଛାର ତାହା ପକ୍ଷେ ।
ଘନ, ପୁଣି ଘନରାଣୀ ଅନଳରୂପିଣୀ
ବିଜୁଳି, ଉଭୟେ ମୋତେ କରନ୍ତି ଭୀଷଣ,
ପ୍ରାଣସଖୀ କୁମୁଦିନୀ ହେରି ମୋ ଦୁର୍ଗତି,
ମହାଭୟେ ମହାଦୁଃଖେ ନମୀଲେ ନୟନ ।
କିପାଁ ନାଥ, ନିରୁଦ୍ୟମ ତୁମ୍ଭେ ହେ ସେକାଳେ,
ଭୀରୁ କ୍ଲୀବ ସୁଖୀ ପ୍ରାୟ, କିପାଁ ବା ନୀରବେ
ଜାଣ୍ଡି କର ଦୁରାତ୍ମାର ଦୁଃସହ ଦୌରାତ୍ମ୍ୟ,
କିପାଁ କରି କ୍ଷମା ତାକୁ, ଶାସ୍ତିଭଜନ ସେ,
କ୍ଷମା ମହାଜନ ଧର୍ମ, ସତ୍ୟ ଏ ବଚନ,
ମାତ୍ର ଅପାତ୍ରରେ କ୍ଷମା ଭାବୀ ଦୁଃଖ ହେତୁ ।
ଲଭି ତୁମ୍ଭ ଦୟା, ବଢ଼େ ଦୁରାକାଂକ୍ଷା ତାର,

ତହୁଁ ବର୍ଷା ଗୃରମାସ ଅତ୍‌ରେ ତୁମ୍ଭଙ୍କୁ ।
ଭସିବୁଲେ ତବ ସ୍ମୃତି ଆକାଶରେ ନାଥ,
କେବେ ଅବା ମୂର୍ତ୍ତି ଧରି କହେ ମୌନେ କଥା,
ହୃଜଡ଼ିତ ସେ କଥାରେ କେତେ ସୁଖ ଦୁଃଖ,
କେତେ ହସ କାନ୍ଦ, କେତେ ଅତୀତ ମଧୁର—
ବ୍ୟଥା, କେତେ ଆଶା, କେତେ ଦୁରାଶା, ନିରାଶା,
ସେହି କଥା—ସେ ପ୍ରାଣର କଥା, ପ୍ରାଣଧନ,
ଘେନିଯାଏ ବର୍ତ୍ତମାନୁ ଅତୀତକୁ ମୋତେ ।
ହେଉଛି ମୁଁ ନିତ୍ୟ ଦହି ସେ ସ୍ମୃତି-ଅନଳେ,
ସେ ଦହନ ସୁଖ ମୋର, ସେହି ମୋ ଭରସା,
ନ ହେଲେ ନିଦହି ଅତ୍ମା ତୀବ୍ର ଦୁଃଖାନଳେ,
ନ ହୁଏ ବିଶୁଦ୍ଧ କେବେ, ଅଗ୍ନିପରୀକ୍ଷାରେ
ଉତ୍ତୀର୍ଣ୍ଣ ସୁବର୍ଣ୍ଣ ବିନା ନିର୍ମଳ, ଉଜ୍ଜ୍ୱଳ ।
ଖେଳ ଯେବେ ଲୁଚକାଳି ଘନକୋଳେ, ଶଶି,
ତବ ଏ ପ୍ରେୟସୀ ସହ, ଖେଳନ୍ତି ଯେସନ
ବନମାଳୀ, ରସରାଜ ରସିକଶେଖର
ରାଧା ସଙ୍ଗେ— ମଞ୍ଜୁ କାନ୍ତ କୁଞ୍ଜବିଳାସିନୀ,
ବୃନ୍ଦାବନକୁଞ୍ଜେ, କିମ୍ବା କୁଞ୍ଜର ଯେସନ
ଖେଳେ ବନେ କୁତୂହଳେ କୁଞ୍ଜରଣୀ ସହ,
ସେ କାଳର ଭାଗ୍ୟଗର୍ବ କେ ବର୍ଣ୍ଣିବ ମୋର,

ନ ଥାଏଁ ସେକାଳେ କେବେ ମୁହିଁ ମୋ ଦେହରେ ।
ମଣେ ଯେଣ୍ଟେ କେଉଁ ନବ ସ୍ୱପ୍ନ ସ୍ୱର୍ଣ୍ଣସ୍ୱର୍ଗେ
ଦେଖୁଛି ଅଦୃଷ୍ଟପୂର୍ବ ସୁଷମା ନର୍ତ୍ତନ,
ମହୋତ୍ସବମୟ, ଛାଡ଼ ମର୍ତ୍ତ୍ୟରେ ଶରୀର ।
ସ୍ମରି ତାହା ଏବେ, ବସି କାନ୍ଦୁଛି ସତତ,
କ୍ରନ୍ଦନରେ ସୁଖ ଲଭେ ବଦଗ୍ଧ ହୃଦୟ ।
ଝୁରୁଛି ମୁଁ ଏବେ, ଭାଗ୍ୟେ କେବେ ବା ଅସିବ
ଫେରି ସେ ଅତୃପ୍ତ ସୁଖ, ସେ ମଙ୍ଗଳ ଦନ,
ହାୟ, ସୁଖ ଯେବେ ଭବେ ଏଭଳ ଚଞ୍ଚଳ,
ବସନ୍ତମାଧୁରୀ କମ୍ବା ଇନ୍ଦ୍ରଧନୁ ପ୍ରାୟ,
ଏତେ ଦୁଃଖାବହ ଯେବେ ପରିଣାମ ତାର,
କପାଇଁ ଲୋଡ଼ନ୍ତି ତେବେ ଭ୍ରାନ୍ତଜନେ ତାହା,
କାଳବ୍ୟାଳେ ପୁଷ୍ପମାଳ ମଣନ୍ତି କପାଇଁ !

ମାସକେ ବାହୁଡ଼ ଅସେ ପୂର୍ଣ୍ଣିମା ସୁନ୍ଦରୀ
ଅନନ୍ତ ଅନନ୍ଦେ ଧରି ଚୁମ୍ବି ଶଶାଙ୍କ,
ପ୍ରଦାନେ ଜଗତଜନେ ନବୀନ ଅନନ୍ଦ,
ଫେରି ଅସେ ଯଥା ତୀର୍ଥଯାତ୍ରୀ ତୀର୍ଥୁ, ଧରି
ଦେବତା ନର୍ମାଲ୍ୟ, ଫୁଲ, ଚନ୍ଦନ, ତୁଳସୀ,
ପୁଣ୍ୟ ଗୌରବରେ ହୋଇ ସ୍ଫୀତ, ଗ୍ରାମଜନେ

ବିତରି ପ୍ରସାଦ, ମଣେ ଆତ୍ମପ୍ରସାଦ ସେ ।
ପାଇ ତବ ପୂର୍ଣ୍ଣକଳା, ହସେ ଅସମ୍ଭାଳେ
ଦ୍ୟୁଲୋକ, ଭୂଲୋକ, ହସେ ଲତାକୋଳେ ଫୁଲ,
ମିଶି ତହିଁ ତବ ହାସ, ଉଦାର, ପ୍ରସନ୍ନ,
ଲାଗେ ହାସ୍ୟ-ମହୋତ୍ସବ, ବହିଯାଏ ଭବେ
ଦୃଶ୍ୟରାଶି ପରେ ହାସ୍ୟ-ପିୟୂଷପ୍ରବାହ ।
ପ୍ରଥମେ ତୁମ୍ଭଙ୍କୁ ହେରି ଚକ୍ରବାଳ ମୂଳେ
ବାରୀନ୍ଦ୍ର, ଆନନ୍ଦେ ଉଠେ ଉଚ୍ଛୁଳେ ଉତ୍ଫୁଲ୍ଲି,
ତହିଁ ସଙ୍ଗେ ଫୁଲି ଉଠେ ମୋ ହୃଦୟ-ସିନ୍ଧୁ,
ଲମ୍ବାଅ ଆଦରେ ତୁମ୍ଭେ ପାରାବାର ବକ୍ଷେ
ଲହରୀ-ହୀରକ ହାର, କୋଟିଶତକେଶି ।
ହେ ଦେବ, ତୁମ୍ଭର ପୁଣ୍ୟ ମଙ୍ଗଳ ମୟୂଖ
ଚୁମ୍ବେ ଅଗ୍ରେ ଗିରିଚୂଡ଼ା, ରାଜେ ସେ ଯେସନ
କଳ୍ପନାର ସ୍ୱର୍ଣ୍ଣରଥ, ସ୍ୱର୍ଣ୍ଣଧ୍ୱଜଶୋଭି ।
ଆଲିଙ୍ଗନ୍ତେ ତୁମ୍ଭଙ୍କୁ ମୁଁ, ନିରେଖି ସେ ଦୃଶ୍ୟ
ବିଭାବନା ଅଲଙ୍କାର* ଖଣ୍ଡାଇ କୋବିଦେ,
କହନ୍ତି,—"ଭ୍ରମର କୋଳେ ଶୋଭେ କି କୁସୁମ,"
ସ୍ୱଭାବେ କୁସୁମ କୋଳେ ବସେଁ ସିନା ଅଳି ।

---

*ସାଦୃଶ୍ୟ ହେତୁ ଅବାସ୍ତବ ଧର୍ମର ଆରୋପକୁ ବିଭାବନା ଅଲଙ୍କାର ବୋଲାଯାଏ ।

ତୁମ୍ଭ ଗୁଣେ ମୋ ହୃଦୟ ଦୀପ୍ତ, ନିଶାମଣି,
ଯାଇଛ କି ଭୁଲି ଏହା, କୈଳାଶମୂଚୂଡ଼ା,
ବିସ୍ମୃତ ମହତ ବ୍ୟକ୍ତି ସଦା ଆତ୍ମଗୁଣ,
ଏହା ତ ସ୍ୱଭାବସିଦ୍ଧ ଧର୍ମ ମହତର ।
ତୁମ୍ଭ ସୌମ୍ୟରୂପ ଏକା କରିଅଛି ଧନ୍ୟ
ବିଶ୍ୱର ଉପମାସୃଷ୍ଟି, ସୌନ୍ଦର୍ଯ୍ୟଖଣିରେ
କାହିଁ ତୁମ୍ଭ ତୁଲ୍ୟ ମଣି, ତୁମ୍ଭ ରୂପ-ତୀର୍ଥେ
ଅବଗାହି ନେତ୍ର ମୋର ହୁଏ ପୁଣ୍ୟ, ଧନ୍ୟ ।
କୃଷ୍ଣପକ୍ଷେ, ଶଶଧର, ହୁଏ ହେ ତୁମ୍ଭର
ଅନୁଦିନ ତନୁ କ୍ଷୀଣ, ଶୁକ୍ଳେ ବିପରୀତ,
ତଥା ଲଭେ କ୍ଷୟ ବୃଦ୍ଧି ଦୁଃଖ ସୁଖ ମୋର ।
ହୁଅ ତୁମ୍ଭେ ଜନ୍ମ ଯେବେ ପୌର୍ଣ୍ଣମାସୀ ଗର୍ଭେ,
ମଙ୍ଗଳୁ ମଙ୍ଗଳ ପ୍ରାୟ, ବହି ପୂର୍ଣ୍ଣକଳା,
ଧରି ବିଶ୍ୱବିମୋହନ ନବୀନ ମାଧୁରୀ,
ସେ କାଳେ ମୁଁ ଧନ୍ୟ ହୁଏଁ, ଯେଣୁ ମୁଁ ତୁମ୍ଭର ।

ପ୍ରତିବିମ୍ବରୂପେ ଆସି ଲୁଟି ଲୁଟି ପଦ୍ମୁ,
ଆଚ୍ଛାଦ ରହସ୍ୟେ ତୁମ୍ଭେ କୁମୁଦିନୀନେତ୍ର
ପ୍ରତିବିମ୍ବ-କରେ, ଲଭି ସ୍ପର୍ଶସୁଖ ତବ,
ସାତ୍ତ୍ୱିକେ ଚମକି ଉଠି ହସେ ସେ ମଧୁରେ,
ଦେଖି ତାର ସୁଖ, ଦେବ, ଲଭେ ମୁଁ ଆନନ୍ଦ ।

ହେଉ ପଛେ ସପତ୍ନୀ ସେ ଜଗତ ନେତ୍ରରେ,
ମାତ୍ର ମୋର ପ୍ରାଣାଧିକା, ଦୋହଙ୍କ ଜୀବନ
ଗଢ଼ା ଏକ ଉପାଦାନେ, ତେଣୁ ତାହା ସୁଖେ
ଆତ୍ମା ମୋର ହର୍ଷପ୍ଲୁତ, ବିମୁଗ୍ଧ ସତତ ।
କୁମାରପୂର୍ଣ୍ଣିମା ରାତ୍ରେ କୁମାରୀନିଚୟ
ପୂଜନ୍ତି ତୁମ୍ଭଙ୍କୁ, ରଚି ତବ ପ୍ରତିମୂର୍ତ୍ତି
ବିରଚି କୁସୁମେ, ଦିବ୍ୟ ବରଲ୍ଲଭ ଅଶେ ।
ଅର୍ପନ୍ତି କୋମଳ କରେ ଅର୍ଘ୍ୟ ତବ ପଦେ,
ବନ୍ଦାନ୍ତି ପ୍ରଦୀପେ ଲଜ୍ଜା-ବିରଚିତ ଗୃହେ,
ଶଙ୍ଖ ହୁଳହୁଳି ଶବ୍ଦେ ଉଚ୍ଛୁଳେ ଅବନୀ,
ହେର ସେ ଗୌରବ ତବ, ଅମରଦୁର୍ଲ୍ଲଭ,
ନିଜକୁ ଗର୍ବିତା ମଣେ ଏ ଦାସୀ ତୁମ୍ଭର,
ତୁମ୍ଭେ ଆତ୍ମା, ମୁଁ ଶରୀର, ତୁମ୍ଭର ଗୌରବେ
ଗୌରବାନ୍ୱିତ ମୋର ସତ୍ୟ, ସ୍ୱଭାବିକ ।
ତୁମ୍ଭ ଯୋଗେ ସୁନ୍ଦର ମୁଁ, ହେ ସୁନ୍ଦରରୂପା,
ମୋ ଯୋଗେ ସୁନ୍ଦର ତୁମ୍ଭେ, ସୁନ୍ଦର ଯେସନ
ପୁଷ୍ପ ପର୍ଣ୍ଣପୁଟ ଦୋହେ ପରସ୍ପର ହେତୁ,
ଡାକୁଛି ତୁମ୍ଭର ପାଇଁ ତୁମ୍ଭଙ୍କୁ ମୁଁ ବନ୍ଧୁ,
ଆସି ପତ୍ରପାଠ ମାତ୍ରେ, ଏ ବିରହିଣୀକୁ
କର ହେ ଗୌରବାନ୍ୱିତା ମିଳନ-ଗୌରବେ ।

କୃପଣ ଧନୀଙ୍କ କର୍ଣ୍ଣେ ଦୀନର ପ୍ରାର୍ଥନା
ନ ପଶି ମିଳାଇ ଯାଏ କର୍ଣ୍ଣମୂଳେ ଯଥା,
ଆଶା ଅଛି ମୋ ପ୍ରାର୍ଥନା ନ ହେବ ସେଭଳି,
ଶୁଭେ ତବ କରଗତ ହେଉ ଏ ଶତାଉ୍ ।



## ପଞ୍ଚମ ସର୍ଗ ।

( ଅଗସ୍ତ୍ୟ ପ୍ରତି ଦକ୍ଷିଣାଶା । )

ନମେ ତବ ଋଷିପଦେ, ହେ ଋଷିପୁଙ୍ଗବ,
ଦକ୍ଷିଣାଶା,— ଯୋଗିବର ଅନମ୍ବର-କନ୍ୟା,
କର ଆଶୀର୍ବାଦ ଯେହ୍ନେ ଲଭୁ ସେ ତୁମ୍ଭଙ୍କୁ ।
କେତେ ଦିନ ଆଉ ଦାସୀ କାନ୍ଦିବ ବିଚ୍ଛେଦେ
ବିସର୍ଜି ବେଦନାତପ୍ତ ଘନ ଦୀର୍ଘଶ୍ୱାସ,
କେତେ ଦିନେ ଦୁଷ୍ଟଗ୍ରହ ଘୁଞ୍ଚିବ ତାହାର,
ଲଭିବ ସେ ତବ ପଦ-ଅର୍ଚ୍ଚନା ସୌଭାଗ୍ୟ,
କେତେ ଦିନେ ଯୋଗି, ହେବ ଯୋଗଭଙ୍ଗ ତବ,
ପଡ଼ିବ ଏ ଦାସୀ ମନେ, କହ ତା ଦାସୀଙ୍କ ।
ଗୁରୁ ତୁମ୍ଭେ, ଆସ ଖରେ, ଅର୍ପିବ ଏ ଶିଷ୍ୟା
ପ୍ରେମ-ହେମହାର, ଗୁରୁଦକ୍ଷିଣାସ୍ୱରୂପେ,
ରଖିଛୁ ତା ବହୁଦିନୁ ଗୁନ୍ଥି ତୁମ୍ଭ ପାଇଁ
ପ୍ରଣୟର ପାଟଡୋରେ, ଅରୂପ ସୁନ୍ଦରଂ ।
ଦୟାମୟ, ଦୟା ତବ ସହଜ ସମ୍ପତ୍ତି
ବିଶ୍ୱଗତ, ଅର୍ପ ତାହା ଜଗତକୁ ଯାଚି,
ଦାନବ୍ରତ, ଖୋଜୁ ନାହିଁ ଅନ୍ୟ ଦାନ ମୁହିଁ,

ପ୍ରଦାନ ଦର୍ଶନ ଥରେ, କର ହେ କୃତାର୍ଥ ।
ଅବଳା ମୁଁ, ମନୋବ୍ୟଥା କହିବ କେମନ୍ତେ
ତୁଣ୍ଡ ଖୋଲି, ଜଳାଞ୍ଜଳି ସମର୍ପି ଲଜ୍ଜାକୁ,
ତୁମ୍ଭେ ତ ଦକ୍ଷ ଯୋଗୀ, ବୁଝ ଯୋଗବଳେ ।
ନାରୀଙ୍କ ସ୍ୱଭାବ ଏହା,—ଗଲେ ସୁଦ୍ଧା ପ୍ରାଣ
ନ କରନ୍ତି ବ୍ୟକ୍ତ ଗୁପ୍ତ ଅନ୍ତରବେଦନା,
ସେହି ବ୍ୟଥା, କୋଟରସ୍ଥ ଜ୍ୱାଳାବଳୀ ପ୍ରାୟ
ଦହେ ମର୍ମସ୍ଥଳ, ମାତ୍ର ବାହ୍ୟେ ସେ ଶୀତଳ ।
କୁସୁମ କୋମଳ ତନୁ କାଟେ ଦୁଷ୍ଟ କୀଟ,
କହେ କି ସେ ପ୍ରଣୋଧିକ ଅଳିସଙ୍ଗେ ତାହା,
ସେହି ହାସ, ସେହି ଖେଳ ବାହାରେ ତାହାର,
କାହା ନେତ୍ରେ ନୁହେ ବାରି ପୀଡ଼ିତା ବୋଲି ସେ ।
ରଚି ଗର୍ଭ ତାରି-ରତ୍ନେ, ପିନ୍ଧି ତାରି-ହାରି,
ଆବରି ଚନ୍ଦ୍ରିକାରୂପ ସ୍ୱର୍ଣ୍ଣପାଟେ ବେଶ,
ବସିଛି ମୁଁ ଗୃହେଁ ତବ ଆଗମନ ପଥ
ବ୍ୟଗ୍ରନେତ୍ରେ, ଆସ ପ୍ରଭୁ, ମନ୍ତ୍ରପାଠ ମାତ୍ରେ ।
ତପୋଧନ, ତେଜିଥିଲ ଯାହା ଉପଦ୍ରବେ
ତପୋବନ ତୁମ୍ଭେ, ସେହି ରକ୍ଷ-ଘନେଶ୍ୱର
ସାରି ଦିଗ୍‌ବିଜୟ, ଫେରି ଗଲଣି ସ୍ୱପୁରେ,
ନିରୁପଦ୍ରବ ମୋ ବକ୍ଷ, ତବ ତପୋବନ,
ଆସ ତହିଁ କର ଦେବ, ଯୋଗ ଅନୁଷ୍ଠାନ ।

ଘନଘଟ୍ଟ ସ୍କନ୍ଧାବାରେ ବାଜୁ ନାହିଁ ଆଉ
ବିଜୟ-ବାଜଣା, ଏବେ ନୀରବ ସେ, ପୁଣି
ନିଭିଲଣି ରୁଷ୍ଟ ରାଜା କ୍ରୋଧାଗ୍ନି-ବିଜୁଳି,
ହେଲଣି ନିବୃତ୍ତ ତାର ରୁଦ୍ର ହୁହୁଙ୍କାର,
ନାହିଁ ଆଉ ରକ୍ଷୋଭୀତି, ଆସ ନରଗଣେ ।
କାର୍ଯ୍ୟ ସାଧି ଇନ୍ଦ୍ରଧନୁ ଗଲଣି ବାହୁଡ଼ି,
ପିତା ତାର ରୌଦ୍ର, ମାତା—ସଲିଳକଣିକା,
କୋମଳ କର୍କଶୁ ଜାତ ମହାଦୁର୍ଦ୍ଧର୍ଷ ସେ,
ଦୁର୍ଦ୍ଧର୍ଷ ଯେସନ କୁରୁଚମୂ ଅଭିମନ୍ୟୁ
ଭଦ୍ରାର୍ଜ୍ଜୁନ-ଶୋଭା-ଶୌର୍ଯ୍ୟ-ମିଳନ ସଂଜାତ,
ଶୋଭା ଶୌର୍ଯ୍ୟ ମିଳନହିଁ ଚରମ ଉତ୍କର୍ଷ
ଜାଗତିକ ଉନ୍ନତିର, ବିଧିନିର୍ଦ୍ଦିଷ୍ଟ ଏ ।
ସେହି ଧାନଶ୍ରୀରୂପୀ ସୁନାସୀର ନୃପ
ଅନ୍ତରୀକ୍ଷ-କୁରୁକ୍ଷେତ୍ରୁଁ ଦେଲଣି ଘଉଡ଼ି
ଘନ-ସପ୍ତରଥିଙ୍କୁ ଲେ, ଦେଖୁଛି ମୁଁ ତାହା
ମେଘାବଗୁଣ୍ଠନ ମଧ୍ୟୁ , ଗୈବ ଗୃହାଣୀରେ ।
ଆସିବ ଶରଦ ଭବେ, ବରଦଭୂପତି,
ଦର୍ଶିଲଣି ଚଉପାଶେ ସୂଚନା ତାହାର,
ବର୍ଷାଭବେ ଭେକଛନ୍ଦ ତେଜିଲଣି ଭେକ,✿

✿ ଛତୁ ।

ହୋଇ ଉଠିଲାଣି ଗୁରୁ, ଶିଖିନୀ ନିଃଶ୍ୱାସେ
ବାୟୁ, ପୁଣି ବର୍ଷାବନ୍ଧୁ ଡାହୁକ ନୀରବ ।
ଅଦ୍ଧଗ୍ରାସେ ମୃତକଳ୍ପା ସରୋଜିନୀ ଧନୀ,
କରିବ ନିର୍ବ୍ୟାଧି ତାକୁ ଶରତ-ସୁବୈଦ୍ୟ,
ପିଆଇ ଭାସ୍କର-କର-ଅମୃତ-ଔଷଧ,
ଯଥା ପାର୍ଥ ମହାରଥୀ—କୃଷ୍ଣ-ଅନୁଗାମୀ,
( ଅନୁଗାମୀ, ଉତ୍ସାହର ଉଦ୍ୟମ ଯେସନ )
ଦହଣ ଖାଣ୍ଡବବନ, କଲେ ବେଗମୁକ୍ତ
ସର୍ବଘଟେ ଗୁପ୍ତ, ଶର ଅତୃପ୍ତ ଅନଳେ ।
ହସିବ ପଦ୍ମିନୀ ସରେ, ହେବ ସେହ୍ନ ନିଜେ
ପରିଷ୍କୃତ, ସେ ହାସ୍ୟର ଜୀବନ୍ତ ଔଜ୍ଜ୍ୱଲ୍ୟେ ।
ହେଲାଣି ଉଦ୍ୟାନେ ଉଭା ସୌମ୍ୟା ଶେଫାଳିକା
ଧରି ପୁଷ୍ପାଞ୍ଜଳି, ନୃପ ଶରତ ଉଦ୍ଦେଶେ,
ମଣ୍ଡି ତଣ୍ଡୀ ନଦୀତୀର, ଦୋଳାଏ ମୃଦୁଳେ,
ଶ୍ୱେତଦ୍ୱୀପ ଦୀପ୍ତାକ୍ଷର ଗୃରୁପୁଚ୍ଛୋପମ *
କୁସୁମ-ଗୁମର । ଶୁକ୍ଳ ରାଜହଂସକୁଳ
ଧାବିତ ମାନସମୁଖେ, ଲମ୍ବାଇ ନଭସ୍ତେ
ମୋର ନବଭୂଷାରୂପେ .ହୀରକ ମେଖଳା ।
କ୍ରୀଡ଼ିବେ ହରଷେ ତହିଁ ପ୍ରଣୟବିନୋଦେ,

(୬) ପାଶ୍ଚାତ୍ୟଦେଶୀୟ ବସ୍ତ୍ର ।

ବଦାନ୍ୟ ପୁଷ୍ପର କୋଷ, ପରସ୍ପର ମୁଖେ
ହେବେ ଦଆଦେଇ ତାହା, ମଙ୍ଗଳମିଥୁନ ।
ଆସିବେ ମା ଦଶଭୁଜା ହର୍ଯ୍ୟକ୍ଷବାହନା
ହରରାଣୀ, ମର୍ତ୍ତ୍ୟଧାମେ ପୂଜାଗ୍ରହଣାର୍ଥେ,
ସମ୍ବତ୍ସର ପରେ ଦେବୀ ହେବେ ଶୁଭେ ବଜେ
ଭକ୍ତପୂତ ଗୃହେ, ଅର୍ପି ପଦଧଳ ତାଲୁ
ନାଶିବେ ଅଶିବ ତାର ଶିବବନୋଦନୀ !
ହାୟରେ, କେ ଅଛି ଏହି ଭବମରୁଦେଶେ
ଜନନୀ ସମାନ ଶୀତ ସ୍ୱଚ୍ଛ ତରଙ୍ଗିଣୀ
ସନ୍ତାନ ପକ୍ଷରେ, ସ୍ନିଗ୍ଧ ପୀୟୂଷସଲିଲା,
କେ ଅଛି ନୈରାଶ୍ୟସଙ୍କେ ଭରସା ତାହାର ?
ଆସ ମା, ଉଦ୍ଧାର ତବ ଏ ମୂଢ଼ ସନ୍ତାନେ
ଅର୍ପି ତା ମସ୍ତକେ ପଦ, ଯେ ପଦ ପରଶେ
ହୁଏ ପୂତ ଦେବଶିର, ଧନ୍ୟ ଦେବଜନ୍ମ ।
ମୂଢ଼ ଯେ, ମା, ଏ ସଂସାରେ, ମୁକ୍ତି ଧନ ତାର,
ତେଣୁ ମୁଁ ହୋଇଛି ମୂଢ଼, ଆଶା ବାନ୍ଧି ପ୍ରାଣେ,
ଦୁରନ୍ତ ମହୀପ—ସୁନ୍ଦ ଉପସୁନ୍ଦ ବଂଳ
ଜଏ ମା ଜଗତେ ମୂଢ଼; ମୁକ୍ତ ସେ ମୂଢ଼ତ୍ୱେ ।
ପଠା ନା, ମା, ଖେଳିବାକୁ ଏ ଦୁର୍ବଳ ସୁତେ
ବାରମ୍ବାର ଦୂରଦେଶେ, ହୁଏ ମୁଁ ତହିଁରେ

ବଡ଼ କ୍ଳାନ୍ତ, ନ ଦେଖିଲେ ବ୍ୟର୍ଥ ଖେଳ ମୋର
କି ଫଳ ତୁମ୍ଭର ଦେବ, ରଖ ପଦେ ସଦା ।
ଅମୃତର ପୁତ୍ର ମୁହିଁ, କି କାର୍ଯ୍ୟ ମୋ ମର୍ତ୍ତ୍ୟେ,
କେ ଇଚ୍ଛେ ତ୍ରିଦିନ ବନ୍ଧ ଚର ମୃତ୍ୟୁଦୁଃଖ ।
ହେ କୋବିଦେ, କାବ୍ୟୋଦ୍ୟାନବିହାରୀ ରସିକେ,
ଭସିଯାଇ ହୃଦୟର ଉତ୍ତୀର ଉଚ୍ଛ୍ୱାସେ
ହେଲି ମୁଁ ପ୍ରସଙ୍ଗଚ୍ୟୁତ, ଅଣଅଯୁକ୍ତରେ,
କ୍ଷମିବ ଏ ରସଭଙ୍ଗ ଦୋଷ କ୍ଷମାଗୁଣେ ।

ହେ ବିଶେଷ ତରୁନାମା, ଋଷିକୁଳଧନ,
କେମନ୍ତେ ଧରିବ ନାମ ତବ, କେମନ୍ତେ ବା
ଲଙ୍ଘିବି ମୁଁ ଆର୍ଯ୍ୟକୁଳନୀତି, ଜଗନ୍ମାନ୍ୟ,
ଗୁରୁଜନପୁଣ୍ୟନାମ, ଏ ଅପୁଣ୍ୟ ମୁଖେ
ଉଚ୍ଚାରି ଅକ୍ଷମ୍ୟ ପାପେ ନ ହେବି ଲିପ୍ତ ।
ଦେଖ ପ୍ରଭୁ, ଜଗନ୍ନାଥ ଆଗମନ ଲାଗି
ହୋଇଛି ସୁବର୍ଣ୍ଣ-ସେତୁ ମହାକାଶେ ବନ୍ଧା
ଛାୟାପଥବ୍ୟାଜେ— ହୀରା, ନୀଳା, ପ୍ରବାଳାଦି
ସମୁଜ୍ଜ୍ୱଳ ଶବଳିତ ମଣି ମାଣିକ୍ୟରେ,
ଆସ ନାଥ ଏଥରେ, ପୁଣ୍ୟ ଶୁଭଦୃଷ୍ଟିପାତେ
ହେଉ ମର୍ତ୍ତ୍ୟ ପଥ ଘାଟ ନିର୍ମଳ ପାବନ ।

ପରଦୁଃଖେ ଦୁଃଖୀ ତୁମ୍ଭେ, ପୋଛଦଅ ଅସି
ଧରଣୀଦେବୀର ଅଶ୍ରୁ-ପଙ୍କିଳ କପୋଳ,
ଭୁଞ୍ଜିଛି ସେ ବହୁ କ୍ଲେଶ—ପ୍ରାବୃଟ-ପ୍ରଦତ୍ତ ।
କି କହିବ ଅଧିକ ମୁଁ—ଅଜ୍ଞାନା ରମଣୀ,
ତୁମ୍ଭେ ଶାସ୍ତ୍ରବେତ୍ତା, ଶାସ୍ତ୍ରଜ୍ଞାତା, ଜାଣ ସବୁ,
ପୋଛଦଏ ଯେଉଁ ହସ୍ତ ଅଶ୍ରୁ ଦୁଃଖିନେତ୍ରୁ,
ଦେବ ହସ୍ତ ତାହା, ଦିବ୍ୟ-ମହିମା-ମଣ୍ଡିତ,
ସେ ହସ୍ତର ଅଧିକାରୀ ଯେଉଁ ମହାଜନ,
ବରଷେ ତା ପୁଣ୍ୟଶିରେ, ବିଶ୍ୱଆଶୀର୍ବାଦ—
ନିଷିକ୍ତ ଅମୃତେ, ଲଭେ ନରଦେହେ ସେହୁ
ବିପୁଳ ଗୌରବମୟ ଅମର ଉପାଧି ।
ଭଜଛି କଳୁଷଭରିବ କଲ୍ଲୋଳିନୀ ଜଳ,
ତୁମ୍ଭ ପୁଣ୍ୟଜ୍ୟୋତି, ନାଥ, ହେବ ତାହା ପକ୍ଷେ
ସ୍ଫଟିକ ସମାନ, ତହିଁ ହେବ ସେ ନିର୍ମଳ,
ଗୃହିଁଛି ସେ, ଗୃହିଁ ଅଛି ଏକାନ୍ତେ ସୋତ୍ସୁକେ
ବିମଳ-କମଳ-ନେତ୍ରେ କମଳ ଆକର,
ଆବର ଗୃହିଁଛି ଦେବ, ଏଂ କଣା କଙ୍କଂସୀ
ବିଜୟ ସରଣୀ ତବ, ହେ ହୃଦୟଜ୍ୟୋତି,
ପ୍ରକାଶିତ ହୁଅ ଅସି ଅଭାଗୀ ହୃଦୟେ ।
ଗାଉ ମୋ ଅନ୍ତର, ହର୍ଷେ ପ୍ରାଣର ସଙ୍ଗୀତ,

ନାଚ ଉଠୁ ଆତ୍ମା ସୁଖ-ମିଳନ-ପୁଲକେ,
ହସୁ କୁମୁଦିନୀ, ମିଶୁ ହାସ୍ୟଜ୍ୟୋଛ ତାର
ଜ୍ୟୋଛରେ ତୁମ୍ଭର; ତେଜ ଭୂଷିତ ଭୂବେଶ
କଶୋଖିବେଶରେ ଧରା ହେଉ ସୁସଜ୍ଜିତ ।

ଋଷିରାଜ, ଶୋଷି ତୁମ୍ଭେ ମହାସିନ୍ଧୁ ନୀର,
ଖର୍ବ କଲ ଗର୍ବ ତାର; ଶାସି ବିନ୍ଧ୍ୟଶୈଳେ,
ଚନ୍ଦନ-ବନ୍ଦିତ, କଲ ଚିର ନିଷ୍କଣ୍ଟକ
ଗଗନେ ଜ୍ୟୋତିଷ୍କପଥ, ଏଡ଼େ ଲୋକ ତୁମ୍ଭେ,
ଚିର ଅଭାଜନ ମୁହିଁ, ରୂପ-ଗୁଣ-ହୀନ,
ତଥାପି ହେ ନାଥ, ତୁମ୍ଭ ସଧର୍ମିଣୀ ବୋଲି
ଅତୁଳ ଗୌରବାନ୍ୱିତା ମଣେ ମୁଁ ନିଜକୁ ।
ନାହିଁ ରୂପ ନାହିଁ ଗନ୍ଧ ଧୁତୁରା ଫୁଲର,
ମାତ୍ର ସେ ଗୌରବାନ୍ୱିତା ଶିବସେବାଫଳେ;
କର୍ପୂର ସଂସର୍ଗ ହେତୁ ବାସେ ସମ୍ପୁଟକ ।
ତବ ଯୋଗେ ଗୌରବିନୀ ଏ ପଲ୍ଲୀଗୃହିଣୀ,
ଲଭିଲେ ତୁମ୍ଭର ପଦ-ସେବାର ସୌଭାଗ୍ୟ,
ଆବର କୈବଲ୍ୟପ୍ରଦ ଚରଣ ଦର୍ଶନ,
କୋଟିଗୁଣେ ହେବ ସେହି ଗୌରବ ସଫଳ ।
ବାଞ୍ଛୁଛି ମୁଁ ଆଶା, ବସି ପଦପ୍ରାନ୍ତେ ତବ,
ଶୁଣିବି ତାପସ, ପୁଣ୍ୟ ବେଦ ମଧୁ ଧ୍ୱନି

ଅନୁଷ୍ଟୁପ ଛନ୍ଦୋବଦ୍ଧ, କୋମଳ ଗମ୍ଭୀର;
ଶୁଣିବି ଆବର ବହୁ ଆର୍ଯ୍ୟଶାସ୍ତ୍ର ବ୍ୟାଖ୍ୟା,
ଧର୍ମ ଉପଦେଶ, ଶୁଦ୍ଧ ସୁନୀତିବଚନ,
ହେ ଜୀବନଗୁରୁ, ଏବେ ଧର୍ମଗୁରୁରୂପେ
ଦିଅ ଦୀକ୍ଷା ଏ ଦାସୀକି, ଯାଉ ସେ ନିସ୍ତର,
ମାଗୁଅଛି ଏହି ଭିକ୍ଷା, ପୂରାଅ କାମନା ।
ହେ ଯୋଗ-ପୂଜକ-ଯୋଗି-ଯୋଗୀନ୍ଦ୍ର-ପୂଜିତ,
କେତେ ସୁପ୍ରସୁପ୍ତ ଆଜ ଉଠୁଛି ଉଭାସି
ଅସ୍ଥିର ହୃଦୟେ ମୋର କ୍ଷିପ୍ତଭାବ ସହ ।
ଭଦ୍ରପଦ-ବେଦୀପୃଷ୍ଠେ ବସି ଯେବେ ତୁମ୍ଭେ
ନଭ-କୃଷ୍ଣାଜନାସନେ ରତ ହୁଅ ଯୋଗେ,
ପୁଣ୍ୟର ଅମୃତ ଜ୍ୟୋତି ସ୍ଫୁରି ଅପଘନୁ
ବୁଡ଼ାଏ ତାରକାକୁଳ କ୍ଷୀଣତର ଜ୍ୟୋତି,
ବୁଡ଼ାଏ ଯେସନ ଜ୍ୟୋତ୍ସ୍ନା ଖଦ୍ୟୋତ ଆଲୋକେ,
ସେ କାଳେ ମୁଁ ଗୃହେଁ ଥାଏ ମୂର୍ତ୍ତିକୁ ତୁମ୍ଭର
ନିର୍ନିମେଷ ନେତ୍ରେ, ବହି ଅତୃପ୍ତ ଲାଳସା,
ଯଥା ଘନେ ଚାତକିନୀ, ସୂର୍ଯ୍ୟେ ସୂର୍ଯ୍ୟମୁଖୀ ।
ଭାବେ ମନେ, ହୋଇଥାନ୍ତା ଭାଗ୍ୟ ମୋର ଯେବେ
ଲୋପାମୁଦ୍ରା ଭାଗ୍ୟ ଭଳି, ପିଅନ୍ତି ମୁଁ ତେବେ
ଏ ରୂପମାଧୁରୀ, ରହି ସ୍ୱାମୀପାଶେ ସଦା ।

ଖୋଜେ ନାହିଁ ଭାଗ୍ୟ ତାର ସପତ୍ନୀ ଈର୍ଷାରେ,
ସତୀ ସେ, ହଂସିଲେ ତାକୁ କାହିଁ ଛି ନିସ୍ତାର,
କେବଳ ମୁଁ କରୁଥାଏଁ ଭାଗ୍ୟର ତୁଳନା ।
କି ତପେ ତାପସୀ ହେଲା ତାପସମୋହନୀ,
ଭୁଞ୍ଜିଲା ସେ ଅବଚ୍ଛେଦ ସୁଖ, ଜାଣିଲେ ମୁଁ,
କରନ୍ତି ସେ ତପ, ହେଉ ପଛେ ସୁକଠୋର,
ଅନଶନେ, ଅଶୟନେ, ଏକନିଷ୍ଠମନେ,
କରନ୍ତୁ ସେ ତପେ ତନୁକ୍ଷୟ, ଆୟୁକ୍ଷୟ,
ନୁହନ୍ତୁ ନୋହିବାଯାଏ କ୍ଷାନ୍ତ ଇଷ୍ଟସିଦ୍ଧି ।
କିନ୍ତୁ ହାୟ ଆଶା, ଧିକ ବଚନସର୍ବସ୍ୱା,
କିପାଁ ଲୋ ନିବସୁ ତୁହି ମାନବହୃଦୟେ,
କିପାଇଁ ଦହୁ ଲୋ ଆଶା, ଦାବାନଳରୂପେ
ମୋର ମନୋବନ, ବଡ଼ ନିର୍ଦ୍ଦୟା ତୁ ଦୁଷ୍ଟା ।
ଦେଖେଁ ନିତି ପ୍ରୀତିକେଳି ପ୍ରାଣନାଥଙ୍କର
ପ୍ରଭା ସହ, ନଭେ ତାରା ସହ ତାରେଶର,
ମର୍ତ୍ତ୍ୟେ ପୂଜୁଥାନ୍ତି ପାଦ ପଦ୍ମିନୀ କୈରବୀ,
ଚକ୍ରବାକ ଚକ୍ରବାକୀ ବସି ଏକଶାଖେ
ରତ ପ୍ରେମାଲାପେ, ଗୃହିଁ ପରସ୍ପର ମୁଖ,
ଅଭିମାନେ ଉଡ଼ିଯାଏ ପୁଷ୍ପକୋଳୁଁ ଅଳି,
ବାତେ ଦୋଳି ତହୁଁ ଫୁଲ-ସୁନ୍ଦରୀ ସମ୍ରାଜ୍ଞୀ

ଶିର ସଞ୍ଚାଳନ ଛଳେ ଡାକେ ପ୍ରାଣନାଥେ,
କେବେ ଅବା ମାନ ବାନ୍ଧି ବସେ ମୌନେ ଫୁଲ,
ଛଳ ଛଳ ନୟନରୁ ଢେଳ ଶିଶିରାଶ୍ରୁ,
ଢେଳ ଦୀର୍ଘଶ୍ୱାସ ବାୟୁ ସନସନ ବ୍ୟାଜେ,
ରସିକଶେଖର ଅଳି ତହିଁ ମହାବ୍ୟସ୍ତେ
କହି ଗୁଣୁ ଗୁଣୁ ସ୍ୱରେ କେତେ ଗୂଢ଼କଥା,
ଭଙ୍ଗେ ଅସି ମହାମାନ ମାନିନୀ ପ୍ରିୟାର ।
ହସି ଉଠେ ଫୁଲ, ହସି ଉଠେ କାନ୍ତ ତାର,
ଗାଏ ମହାନନ୍ଦେ ଭୃଙ୍ଗ ମିଳନସଙ୍ଗୀତ,
ମଧୁର ସେ ଅଭିମାନ, ମଧୁର ମିଳନ,
ସୁଅଗେ ନାୟକ ତୁମ୍ଭେ ନାୟିକା ବଦନ;
ନାଗର ନାଗରୀଙ୍କର, ହେ ନାଗରବର,
ଦେଖି ସେ ବାଞ୍ଛାବ୍ୟଗ୍ରତ, ମଧୁର ପାବନ,
କି ହୁଏ ମୋ ମନ, ତାହା ଜାଣେ ମୁହିଁ ଏକା ।
ବନ ପୋଡ଼ିଗଲେ, ନାଥ, ଜାଣନ୍ତି ସକଳେ,
ମନ ପୋଡ଼ିଗଲେ, ହାୟ, କେ ଜାଣିବ କାହିଁ ।
କେବେ ତୁମ୍ଭ ସ୍ନେହଧାରା ବହିବ ଦାସୀରେ
ଅଦୃଷ୍ଟ-ସାଗର ମୁଖେ, କେବେ ଅବା ଅସି
ପାଳିବ ଏ ସେବକୀକୁ ପ୍ରୀତି-କ୍ଷୀର ଦାନେ,
ପାଳେ ଯଥା ହିମବିନ୍ଦୁ ସୁକୁମାରୀ ଫୁଲେ,

ଢ଼ାଳ କାମଧେନୁ କ୍ଷୀର ବଦନେ ତାହାର ।
ଉଠିଲାଣି ତପୋବନୁ ପୁଣ୍ୟ ଯଜ୍ଞଧୂମ,
ଉଠୁଛି କି ଆହା; ବଈଶିଳ୍ପୀ ଶିଳ୍ପଶାଳୁଁ
ଧାତୁଧୂମ, ତରଳାଏ ଶିଳ୍ପୀ ନାନା ଧାତୁ,
କରିବ ସଂସ୍କାର ତହିଁ ବର୍ଷାଭଗ୍ନ-ମସ୍ଥ ।
କଲାଣି ଶରତ ବଳେ, ନିଷ୍କାର ବାରିଦ—
ଶୁକ୍ଳରଥେ, ଦେବାକୁ ଏ ସମ୍ବାଦ ତୁମ୍ଭଙ୍କୁ
କହିଲି ମଧୁପେ ଡାକି ବନସ୍ଥେ, ଆହୁରେ—
ଅଲିରାଜ, ଅଚଳ ମୁଁ, ମାତ୍ର ଅଛି ତୋର
ଯଦୃଚ୍ଛା ଗମନଶକ୍ତି, ଅବର ତୁହି ତୁ
ପ୍ରେମର ମହିମା, ଯେଣୁ ପ୍ରେମିକ, ରସିକ,
ରସିକ ଭ୍ରମର ବୋଲି ଅଛି ଜନବାଦ,
କହ ଯାଇ କାନ୍ତେ ଏହି ପ୍ରେମିକା ସମ୍ବାଦ ।
କହିବୁ—ହେ ଋଷି, ବହୁବିବାହ ମୋହର,
କିନ୍ତୁ ମୁଁ ସଭିଙ୍କ ମନ ତୋଷେ ହରଘଡ଼ି—
କାହାକୁ ଦର୍ଶନ ଦାନେ, କାହାକୁ ପର୍ଶନେ,
ଦକ୍ଷିଣାଶା, ଲୋପାମୁଦ୍ରା, ଦୁଇ ଜାୟା ତବ,
କେମନ୍ତେ ହେ ଋଷିବର, ସମଦର୍ଶୀ ତୁମ୍ଭେ,
ଗୋଟିଏ ନିକଟେ ରଖି, ଆନେ ଦେଶାନ୍ତରେ ?
ଘେନି ମୋ ପ୍ରାର୍ଥନା ତହିଁ ଅସ୍ପଷ୍ଟ ଗୁଞ୍ଜନେ

ଉଡ଼ିଯାଏ ଢ଼ଳି ଢ଼ଳି ଭୂମ୍ୟ ଉଦ୍ଦେଶ୍ୟରେ ।
ମାନ ଙ୍କ କହିବ ପ୍ରଭୁ, ଆସେ ନେନ୍ହେ ଅଶ୍ରୁ,
ସ୍ୱଭାବେ ମଧୁଅ ସେହୁ, ନଷ୍ଟଣିସ୍ୱେମଣି,
ମତ୍ତ ସଦା ନିଶାଭୋଳେ, ପାସୋଟରେ ମୋ କଥା,
କିବା ଗୃହୀ ମଦ୍ଦ୍ଧୁଳ ଅମଲୀ ଲୋକର,
ସଦା ପରବଶ, ପରଗୃଳତ ସଦା ସେ,
କଥାର ସ୍ଥାୟିତ୍ୱ ତାର ଜୀଟରେ ଗାର ପ୍ରାୟ୍ ।
ସତ୍ୟ ସଙ୍ଗେ ତାର ଅଥି ମହସ ସମ୍ବନ୍ଧ,
ଚରମୃତ ପୁଣି ସେହୁ ନୈତିକ ଜୀବନେ,
ଏ ହାତର କାର୍ଯ୍ୟ ତାର ନ ଜାଣେ ସେ ହାତ ।
ଚରିନହିଁ ମାଳବର ସତର୍କ ପ୍ରହରୀ,
ସେ ଯାହାର କଳୁଷିତ, ରୌରବ କୀଟ ସେ,
ମହାଦୁର୍ଭାଗ୍ୟ ସେ ସତ୍ୟ, ମାନ କୃପାପାନ ।
ଯାଉ ସେ ଘୃଣିତ କଥା, ପାପର ପସରା,
ଘାଣ୍ଟିଲେ କୁସୁମ, ହାତେ ଲାଗିରହେ ବାସ,
ଅମିଷ ଘାଣ୍ଟିଲେ ଲଭ ଦୁର୍ଗନ୍ଧ କେବଳ ।
ସର୍ବସ୍ୱ ଯାହାର ସ୍ୱାର୍ଥ, ତାହାର ଜୀବନ
ନିଜପାଇଁ, ଦେଶର ସେ ଗୁରୁଗଲଗଣ୍ଡ,
ରାଜାର ଶୋଷଣ ପ୍ରଜାକୁଳ ହିତପାଇଁ,
ଖଣ୍ଡର ଶୋଷଣ ମାତ୍ର ନିଜ ପେଟଲାଗି,

ଅମ୍ପୃଖ, ଅମ୍ପୃହତ ଯାର ଶରଲକ୍ଷ୍ୟ,
ତରଲେ କି ପରଦୁଃଖେ ବଜ୍ରହୃଦ ତାର ।
ତୁମ୍ଭ ଆଗମନପାଇଁ, ହେ ପ୍ରାଣଦେବତା,
କରେଁ କେତେ ଦେବତାଙ୍କୁ କେତେ ମାନସିକ
ପୂଜା, ଭୋଗ, ଅଲଙ୍କାର, ବାହନ ପ୍ରଭୃତି,
ମାତ୍ର କିଛି ମିଳେ ନାହିଁ ଫଳ, ଭାଗ୍ୟ ଯାର
ସୁପ୍ରସନ୍ନ, ଦେବେ ତାର ଅନୁକୂଳ ସଦା,
ଅମୂଷ୍ଟନ୍ତ ରୋଗି-ପକ୍ଷେ ମହୌଷଧି ସିନା
ହୁଏ କାର୍ଯ୍ୟକର, ନାଥ, କି ଲେଖିବ ଆଉ,
ସ୍ମୃତି,ଅଶ୍ରୁ,ଭକ୍ତି ମୋତେ ନ ଦେଲେ ଲେଖାଇ,
କହିବି ସାକ୍ଷାତେ ସବୁ ହୃଦୟର ବ୍ୟଥା,
ଆସ ଘରେ, ପ୍ରତିପତ୍ରେ ନାହିଁ ପ୍ରୟୋଜନ ।



## ଷଷ୍ଠ ସର୍ଗ ।



(ମୃଗ ପ୍ରତି ମୃଗତୃଷ୍ଣା ।)

ପାରିବ କି ଚିହ୍ନି ଏବେ, ହେ ପଶୁତାପସ,
କମଳନୟ୍‌ନ, ବନ-ସରସୀ-କମଳ,
ରୌଦ୍ରରାଜକନ୍ୟା ଦୀନା ଏ ମୃଗତୃଷ୍ଣାକୁ
ସମ୍ବତ୍ସର ଅନ୍ତେ, ସେନ ପ୍ରଣୟ୍ ମୋହର ।
ହେ କୁରଙ୍ଗ, ପଶୁକୁଳ-ମହର୍ଷି-ପ୍ରବର,
ଦେବବାକ୍ୟେ ଅବତୀର୍ଣ୍ଣ ତୁମ୍ଭଲାଗି ମୁହିଁ,
ସ୍ୱଭାବେ ମୁଁ ଦେବକନ୍ୟା, କୁପେ ରାଜକନ୍ୟା,
ମାତ୍ର ମୋ ହୃଦୟ୍ ତୁମ୍ଭ ଚିର ରାଜଧାନୀ ।
ଘୃଣନ୍ତି ଅମରେ ଧରା, ଅପବିତ୍ର ହେତୁ,
ତେଣୁ ନ ଛୁଅଁନ୍ତି ତାହା, ହୋଇ ସୁଦ୍ଧା ମୁହିଁ
ତ୍ରିଦିବବାସିନୀ, ଆସେ ତୁମ୍ଭପାଇଁ ମର୍ତ୍ତ୍ୟେ,
ତବ ଅବସ୍ଥାନ ହେତୁ, ଏ ମହୀମଣ୍ଡଳେ
ମଣେ ମୁଁ ପାବନ ତୀର୍ଥ—ସ୍ୱର୍ଗ ଗରୀୟ୍‌ନ ।
ବଡ଼ ଦୁଃଖିନୀ ମୁଁ, ଦୁଃଖେ ହୋଇଛି ମୋ ହୃଦ
ଭୀଷଣ ସମାଧିକ୍ଷେତ୍ର—ଆଶା ଆକାଙ୍କ୍ଷାର ।
କି ଦୁଃଖେ ଦୁଃଖିତ ମୁହିଁ, ଶୁଣିବ କି ତାହା ?

ଶୁଣ ତେବେ, ଲଙ୍ଘି ଧୈର୍ଯ୍ୟ-ପ୍ରାଚୀର ମୋହର
କେବଣ ଅଦ୍ଭୁତ ଚୋର, ପଶି ହୃଦ-ଦୁର୍ଗେ
ଅଲକ୍ଷିତେ, ଘେନି ଗଲା ମନ-ଧନେ ହାୟ ।
ନୁହେ ସେ ସାମାନ୍ୟ ଚୋର, କି କହିବ ବନ୍ଧୁ,
ତା ଦେହେ ସହସ୍ର ଆଖି, ସହସ୍ରାକ୍ଷ ଯଥା,
ବାୟୁ ପ୍ରାୟ ଗତି ତାର, ନ ରହେ ସେ ଗ୍ରାମେ
ନିବସେ ଗହନ ବନେ, ତପଃପ୍ରାଣ* ପ୍ରାୟ ।
କି ସୁନ୍ଦର ତନୁ ତାର, କି ସୁନ୍ଦର ମୁଖ,
କନକ କାକତ ପ୍ରାୟ ଚଟୁଲ ଲଲାଟ,
ନୟନ—ଲାବଣ୍ୟଲୀଳା, ଉପମାର ଧନ,
ଶିରେ ବେନି ଗୁରୁଜଟା, ଯଥା ବଟଶାଖ—
ଶତାବଳୀ ଲଟା, ଶୋଭେ କଣ୍ଠ ସଦୃଶ ।
ସ୍ୱଭାବେ ସେ ଋଷି, ପୁଣି ବହେ ଋଷ୍ୟ ନାମ,
ଭୁଞ୍ଜେ ତୃଣ, ଜାଣେ ନାହିଁ ହିଂସା ଦ୍ୱେଷ କ୍ରୋଧ,
ହେଉ ପଛେ ତସ୍କର ସେ, ମାତ୍ର ମହାପ୍ରାଣ,
ପରପାଇଁ ଆତ୍ମଦାନେ ନୁହେ ସେ କୁଣ୍ଠିତ,
ଅଚରନ୍ତି ମାଂସେ ତାର ନରେ ପିତୃଶ୍ରାଦ୍ଧ,
କେହି ବା ଉଦରଶ୍ରାଦ୍ଧ, ପୁଣ୍ୟାତ୍ମନେ ତାର
ରଚନ୍ତି ତାପସକୁଳ ଆସନ, ବସନ ।

---

* ତପସ୍ୱୀ ।

ଏତେ ବଡ଼ଲୋକ ହୋଇ ହରିଲ ମୋ ଚିତ୍ତ,
ଦେଖିଲେ ତାହାକୁ, ଦୂରେ ପଳାନ୍ତି ମୁଁ ବାଜି
ପ୍ରେମ-ଡୋରେ, ଶତଶିଏ ବଳା, ଶତଫେରେ,
ଏହି ଶାସ୍ତି, ପ୍ରେମରାଜ୍ୟ-ଶାସ୍ତି—ଶାସ୍ତ୍ର-ସିଦ୍ଧ,
ମଧୁର କଠୋର ଶାସ୍ତି ପ୍ରେମିକର ପ୍ରାପ୍ୟ ।
ଏତିକିରେ ନୋହି କ୍ଷାନ୍ତ, ପ୍ରତିଲୋମକୂପେ
ବିଜଣ କଟାକ୍ଷ-ଶର, ତୀକ୍ଷ୍ଣ ଅସିଧାର,
କର ତାକୁ ଅବହେଳ, ଚିର ଏ ହୃଦୟ,
ରଖି ତହିଁ ମନଦ୍ୱାରେ, ଦଅନ୍ତୁ ତା ସିଇଁ,
ଗୈରଭ୍ରିତ ଭଙ୍ଗ ଅଶେ କୃପଣ ଯେସନ
ରଖି ମୁଦ୍ରା ଉପାଧାନେ, ସିଇଁ ଦଏ ମୁଖ ।
ସେହି ଗୈର ମୋ ଆତ୍ମାର ଅରାଧ୍ୟ ଦେବତା,
ସେହି ମୋ ମନର ମନ, ଜୀବନର ଧ୍ୟାନ,
ଏ ପୋଡ଼ା-ନେତ୍ରର ନେତ୍ର, ଧମନୀର ରକ୍ତ,
ସେହି ମୋ ଆଶାର ଆଶା, ତୃଷ୍ଣ ଏ ଛାୟାର ।
ସେହି ମୋ ହୃଦୟ-ବନ-ବିହାରୀ କୁରଙ୍ଗ,
ହେ କୁରଙ୍ଗ, ମଣ ନାହିଁ ଏ ଭକ୍ତି ମୋ ବ୍ୟଙ୍ଗ,
ସୁନ୍ଦର ସୁମନ ସେହୁ ମୋ ଆଶା-ଲତାର,
ଚିନ୍ତା-ରତ୍ନାକର ରତ୍ନ, ସଯତ୍ନରକ୍ଷିତ ।
ଶୂନ୍ୟ ଏ ହୃଦୟ ମୋର ସେ ଗୈର ବ୍ୟତୀତ,

ନୀରବ ଜୀବନ-ଯନ୍ତ୍ର, ଆଶା ଅଚେତନ,
ହୋଇଅଛୁ ନିର୍ବାସିତ ଅଧରରୁ ହାସ,
ନିଷ୍ଠୁର ସତତ ଅଗ୍ନି, ବିଚ୍ଛେଦ ଛାୟାରେ ।
କିଏ ସେହି ଚୋର, ମୃଗ, ପାରିବ କି କହି,
ନ କହିଲେ ଜାଣିବ ମୁଁ ତୁମ୍ଭେ ସେହି ଚୋର ।

ବିରହର ତପ୍ତଶ୍ୱାସେ ନିର୍ମାଣିଛି ମୋତେ
ଧାତା, ବାଷ୍ପମୟୀ କରି, ଜଡ଼ାଇଁ ଅଭାବେ,
ଅଜ୍ଞାତ ଅଭାବ, ପ୍ରାଣେ କରେଁ ଅନୁଭବ,
ଦେଖୁଛି ସଂସାରେ ସବୁ ଅଛି ପୂର୍ବପରି,
ମାତ୍ର ଏକା ନାହିଁ ମୋର ଖୋଜିବା ପଦାର୍ଥ,
ନାହିଁ ମୋର ଚିନ୍ତାଶକ୍ତି, ନାହିଁ ଆଉ ଆତ୍ମା,
କେବଳ ହୃଦୟ ଘେନି ଅଛି ମୁଁ ସଂସାରେ,
ଖୋଜୁଛି ସେ ହୃଦୟରେ ହୃତ ଧନ ମୋର,
କିନ୍ତୁ କି ଆଶ୍ଚର୍ଯ୍ୟ, ଯାହା ନ ଖୋଜେଁ, ତା' ପାଏଁ,
ଆଉ ଯାହା ଖୋଜେଁ, ତାହା ପାଏ ନାହିଁ ସ୍ୱପ୍ନେ ।
ନ ଫୁଟେ ନନ୍ଦନବନେ ମୋ ବାଞ୍ଛିତ ଫୁଲ,
ନାହିଁ ମୋ ଇପ୍ସିତରତ୍ନ କୁବେର ଭଣ୍ଡାରେ,
ମୋ ବାଞ୍ଛିତ ସୁଖ ନାହିଁ ସ୍ୱପ୍ନେ—କଳ୍ପନାରେ,
ଲୋଡୁଛି ମୁଁ ଯେ ଆଲୋକ, ନାହିଁ ତା' ଜ୍ୟୋତିଷ୍କେ
ସତ୍ୟବନ୍ତ ହୃଦେ, କିମ୍ବା ସୁକର୍ମି-କର୍ମରେ ।

କେତେ ବା କହିବ ଆଉ, ବୁଝିଲ କି, ଏଣ,
କି ଦ୍ରବ୍ୟ ଖୋଜେ ମୁଁ ସଦା, ନ ପାରିଲେ ବୁଝି
କହେଁ ଶୁଣ, ତୁମ୍ଭେ ଏକା ସେ ଦୁର୍ଲ୍ଲଭ ଧନ ।'
ଅଥବା ବୋଲିବ ତୁମ୍ଭେ—ଶୁଣିଛ ଏସନ,
"କଥାରେ କି ତିନ୍ତେ ଚୂଡ଼ା, ତୃଷ୍ଣା ପଶ୍ଚାତେ
ଧାଇଁଲେ କେବଳ ଲଭ ଦୁଃଖ, ଅବସାଦ,
ଜଳ ବିନା ଧୂମ୍ରପାନେ ମେଣ୍ଟେ କି ପିପାସା ।"
କିନ୍ତୁ ନାଥ, କି କହିବ ଅଜ୍ଞା ଅବଳା ମୁଁ,
ତୁମ୍ଭେ ବିଜ୍ଞ, ଜ୍ଞାନଯୋଗୀ; କି ଅଜ୍ଞାତ ତବ,
ବୁଝ ଭବ ପ୍ରେମ-ତୃଷ୍ଣା ମେଣ୍ଟେ କି ସଲିଳେ,
ଲୋଡେ ସିନା ପ୍ରେମତୃଷ୍ଣା ଅନ୍ତରର ଭାବ,
ଆବର ପ୍ରାଣର ଭାଷା, ସ୍ନେହଶ୍ରଦ୍ଧାବୋଳା,
ନୁହନ୍ତି ଦେବତା ତୁଷ୍ଟ ଖାଦ୍ୟେ ଅବା ଧନେ,
ତୁଷ୍ଟ ସେ ଭକ୍ତିରେ ସିନା, ଅଦ୍ରବ୍ୟବିଶେଷ ।
ଭାଷା ଭାବଠାରୁ ବଳି କି ଅଛି ବା ପ୍ରେମ,
ପ୍ରେମକୁ ଯେ ଜନ ମଣେ ବିଳାସ ସାମଗ୍ରୀ,
କାମ୍ୟ ପାପ ଉପାଦାନ—ଇନ୍ଦ୍ରିୟ ତୃପ୍ତିର,
ଗଜମୂର୍ଖ ସେହୁ, ନାହିଁ କାଣ୍ଡଜ୍ଞାନ ତାର,
ପ୍ରେମ-ରାଜ୍ୟ ପ୍ରଜାପଣେ ନୁହେ ସେ ଭାଜନ ।
ପ୍ରଣୟ ପବିତ୍ର ସୁଧା, ପ୍ରଣୟ ଦେବତ୍ୱ,

ନୁହେ ତାହା କେଉଁ କାଳେ ସ୍ୱାର୍ଥ-କଳୁଷିତ,
ଆଶା ପଛେ ଧାଇଁ ମନ ଲଭେ ଯେଉଁ ସୁଖ,
ଜାଣେ ତାହା ଭୁକ୍ତଭୋଗୀ, ଦେଖ ଭବ ଭୂମେ
ସାଫଲ୍ୟେ ନ ଥାଏ ସୁଖ, ଥାଏ ସେ ଆଶାରେ,
ସହ୍ୟ ହୁଏ, ପ୍ରିୟବର, ଆଶାର ଯନ୍ତ୍ରଣା;
ହୃଦୟଶୂନ୍ୟତା, ମାତ୍ର, ଅସହ୍ୟ ସର୍ବଥା ।
ବାଞ୍ଛା ମୋର ଶରଦନ ସେବନ୍ତି ସେ ପଦ,
କିନ୍ତୁ ନାଥ, କି କରିବି, କି ଗତି ବା ମୋର,
ରହିବାକୁ ଦୁଇ ମାସ ସମ୍ବତ୍ସର ମଧ୍ୟେ
ମର୍ତ୍ତ୍ୟପୁରେ, ମୋହୋ ପ୍ରତି ବିଧିର ଆଦେଶ,
ଅଲଙ୍ଘ୍ୟ ବିଧିର ବିଧି, କେ ଲଙ୍ଘିବ ବଳେ !
ବିଚିତ୍ର ବିଧାନ ତାର, ଦନକେ ମଞ୍ଜଳେ
ଫୁଲ—ବନସ୍ପତିକନ୍ୟା—ବନ-ଖଣି-ମଣି;
ସୁଷମା-ମୁକୁଟ-ଝର ସ୍ୱର୍ଣ୍ଣସୌଦାମିନୀ
ଜାତ ମାନେ ଲଭେ ମୃତ୍ୟୁ; ଗୃରୁ ଇନ୍ଦ୍ରଧନୁ,
ବର୍ଣ୍ଣକୁଳ-ଅଧିରାଜ, ମିଳାଏ କ୍ଷଣକେ ।
କରିଛି ଚନ୍ଦନଦ୍ରୁମେ ପୁଷ୍ପହୀନ ଯେହ୍ନେ,
ଇକ୍ଷୁଦଣ୍ଡେ ଫଳହୀନ, ନିର୍ଗନ୍ଧ ଜ୍ୟୋତ୍ସ୍ନାକୁ,
କେଉଁ କଥା ଅସମ୍ଭବ ସେ ବିଧି ପକ୍ଷରେ ।
ସ୍ୱଳ୍ପାୟୁ ସୁନ୍ଦର ମାନେ ସୃଷ୍ଟିରେ ତାହାର,

ସ୍ୱଳ୍ପାୟୁ ଯେସନ ଦୁଷ୍କର୍ମନେ ଧର୍ମଭ୍ରବ,
ଅବର ଅପୂର୍ଣ୍ଣ ସବୁ—ସୁଖ ଆଶା ଆଦ,
କେବଳ ସମ୍ପୂର୍ଣ୍ଣ· ତାହା ଅକ୍ଷୟ ବଧାନ ।
ଦିବାଯାମୀ ତୁମ୍ଭପାଇଁ ଝୁରେ ଏ ନୟନ,
ଝୁରେ ଯଥା ଶ୍ରାବଣର କାଦମ୍ବିନୀ ସଦା,
ସ୍ମୃତି ଆଣି ପାଠ କରେ ବସ୍ତି ତାଲିକା
ଅତୀତ ସୁଖର, କାନ୍ତ, କରି ଅନାଥିନୀ,
ଏକାକିନୀ ଏ ଦାସୀକି, ଛାଡ଼ିଗଲ ତୁମ୍ଭେ,
ମାତ୍ର ଗଲା ନାହିଁ ସ୍ମୃତି, ସେହି ମୋ ସଙ୍ଗିନୀ ।
ଆଶା କରି ମୋତେ, ପୁଣି ଦହୁଛି ମୋ ପ୍ରାଣ,
ଦୁର୍ଜନ ପଥିକ ଯଥା ଆଶି ପାନ୍ଥଶାଳେ,
ଜାଳେ ତାକୁ ଭଙ୍ଗି ପୁଣି ରନ୍ଧନ ସମୟେ;
ଯଥାର୍ଥ, ଯନ୍ତ୍ରଣାପ୍ରଦ ଇତରବନ୍ଧୁତା,
ମାତ୍ର ସେହି ରଖିଅଛି ବଞ୍ଚାଇ ମୋ ପ୍ରାଣ ।
ଇଚ୍ଛା କରେଁ ମରିବାକୁ, ମାତ୍ର ମରେଁ ନାହିଁ,
ମଲେ ଆଉ ନ ଦେଖିବି ତୁମ୍ଭ ସୌମ୍ୟମୁଖ,
ନ ସେବିବି ପଦ, ତେଣୁ ତେଜେଁ ସେ ବାସନା ।
କି କହିବି ଦୁଃଖ କଥା, ହେ କୁରଙ୍ଗବର,
ଶୁଣି ତା କାନ୍ଦିବ ନଷ୍ଟେ କୁରଙ୍ଗୀ ତୁମ୍ଭର,
ହେଲେ ସୁଦ୍ଧା ମହାଶତ୍ରୁ ସପତ୍ନୀ ମୁଁ ତାର,

କାନ୍ଦେ ସେ ସ୍ୱପକ୍ଷ ଦୁଃଖେ, ଯେ ହୃଦୟବାନ,
ରାବଣ ପରମ ଅରି ରାମଚନ୍ଦ୍ରଙ୍କର,
ଯାହାପାଇଁ ଦାଶରଥି ହେଲେ ହୃତପତ୍ନୀ,
ମରିଲେ କର୍ବୁରବୃନ୍ଦ ଅର୍ବୁଦ ଅର୍ବୁଦ,
ବୀରପ୍ରସୂ ସ୍ୱର୍ଣ୍ଣଲଙ୍କା ହେଲା ଛାରଖାର,
କାନ୍ଦିଲେ ମୃତ୍ୟୁରେ ତାର ରଘୁକୁଳଚୂଡ଼ା ।
କି ନ କଲା ଦୁର୍ଯ୍ୟୋଧନ, କୁରୁକୁଳ-ଗ୍ଲାନି,
ଅତ୍ୟାଗ୍ରହ ପାଣ୍ଡବଙ୍କ ପ୍ରତି, କଲା ପଣ
କରିବାକୁ ଅପାଣ୍ଡବ ଧରଣୀମଣ୍ଡଳେ,
କୁଳଲକ୍ଷ୍ମୀ, ସତୀଲକ୍ଷ୍ମୀ ଦ୍ରୌପଦୀକୁ ଆଣି
(ହାୟରେ କି ଲଜ୍ଜା, ଦୁଃଖେ ନେତ୍ରେ ଆସେ ଅଶ୍ରୁ)
ରାଜସଭା ମଧ୍ୟେ, କଲା ବିବସନା ଦୁଷ୍ଟ;
ସେ ଦାରୁଣ ଅପମାନ ପ୍ରତିଶୋଧ ବେଳେ
ପ୍ରହାରିଲେ ପଦ ଯେବେ ଭୀମ ମହେଷ୍ୱାସ
ଦର୍ପୋନ୍ନତ ଶିରେ ତାର, କୁରୁକ୍ଷେତ୍ର ରଣେ,
କାନ୍ଦିଲେ ତା ଦେଖି ତେବେ ସୁଧୀ ଯୁଧିଷ୍ଠିର
ଧର୍ମବୀର, ଦୟାବାନ୍, ଶାନ୍ତ, ସତ୍ୟବୀର ।
ଯେ ପ୍ରେମ ହସାଏ, ନାଥ, କନ୍ଦାଏ ସେ ପ୍ରେମ,
ଯେ ଯାହାକୁ ପ୍ରେମ କରେ, କାନ୍ଦେ ତା ଅଭାବେ,
ମାତ୍ର ଯେ ପ୍ରେମିକ, କରେ ଜଗତକୁ ପ୍ରେମ,

କାନ୍ଦେ କି ସେ, ଅନ୍ତ୍ରବରେ-ବ୍ୟକ୍ତି ବିଶେଷର ?
ପ୍ରେମ ହେଲେ ସୀମାବଦ୍ଧ, ହୁଏ ଦୁଃଖପ୍ରଦ,
ସୀମାବଦ୍ଧ ମୋର ପ୍ରେମ, ଏକା ତୁମ୍ଭ ଭିନ୍ନ
ନ ହୁଏ ସେ ପ୍ରଧାବିତ କାହା ପ୍ରତି ଭବେ,
ତେଣୁ ମୁହିଁ କାନ୍ଦେ ଦୁଃଖେ ତୁମ୍ଭରି ଅଭାବେ,
ଚିହ୍ନି ଜାଣେ ପ୍ରଣୟୀ ଯେ, କାନ୍ଦ ଜାଣେ ସେହି,
ପ୍ରେମରାଜ୍ୟେ ଅଚିହ୍ନରା କାନ୍ଦିବ କା ଲାଗି ?

ବସନ୍ତ-ବାର୍ଦ୍ଧକ୍ୟ-କାଳୁଁ ଅସି, ଗୃରୁନେତ୍ର,
ଖୋଜୁଛି ତୁମ୍ଭଙ୍କୁ ମୁହିଁ ପ୍ରାନ୍ତରେ ପ୍ରାନ୍ତରେ,
ମାତ୍ର କାହିଁ ନ ମିଳିଲା ଭେଟ, ଆଜଯାଏଁ ।
ଆନ ପ୍ରଣୟିନୀ ତବ—ସାଗରସଙ୍ଗିନୀ,
ଥିବ ପରା ଅଙ୍କେ ତାର, ଭାବି ଏହା ମନେ
ଗଲି ତାହା କଢ, ରହି ବାଲୁକା ପୁଳିନେ
ଗୃହିଁଲି ତାହାର ସ୍ୱଚ୍ଛ ସଲିଳ-ଦର୍ପଣେ,
ନ ଦେଖିଲି କାହିଁ ତବ ମୂର୍ତ୍ତି ପ୍ରତିବିମ୍ବ,
କେବଳ ନିଜକୁ ଦେଖି ସେ ଝୁରୁର ମଧ୍ୟେ
କ୍ଷୁଣ୍ଣମନେ ତହୁଁ ନାଥ, ଅସିଲି ମୁଁ ଫେରି ।
ଶେଷେ ଉଠି ଗିରିଚୂଡେ—ଅନମ୍ବରଚୁମ୍ବୀ,
ଗୃହିଁଲି ଚୌଦିଗେ ବ୍ୟଗ୍ରେ, ଦିଶିଲା ନିମ୍ନରେ

ଅନନ୍ତ ସୁଷମାସ୍ତୃତ ଅନନ୍ତ କାନନ,
ପୂର୍ଣ୍ଣ ତାହା ବହଗାଲଗୀତେ, ପୂର୍ଣ୍ଣ ଯଥା
ଧନିକ ବିଳାସସଦ୍ମ—ରତ୍ନ-ଅଲଙ୍କୃତା,
ପିକବାଣୀ-ବାମାକଣ୍ଠସମୁତ୍ଥିତ ଗାନେ ।
ଦ୍ରୁମଛନ୍ନ କେତେ ପଶୁ ବନେ ଇତସ୍ତତଃ,
ଗର୍ଜେ କାହିଁ ଜନ୍ତୁ-ଯମ ଭୀଷଣ ଶାର୍ଦ୍ଦୂଳ
ଫୁଲାଇ ଶରୀର କ୍ରୋଧେ, ବୁଲାଇ ଲାଙ୍ଗୁଳ
ମହାଅମଙ୍ଗଳହେତୁ ଧୂମକେତୁ ପ୍ରାୟ ।
ଶୁଣି ସେ ଗର୍ଜନ, ରୁଦ୍ର ବିରାଟ ବିକଟ,
ଥରି ଉଠେ ଗିରିବନ ହୋଇ ଥର ଥର ।
କାହିଁ ବା ଗହ୍ୱରେ ସୁପ୍ତ ସିଂହ—ଗଜାଦନ,
ସ୍ୱଭାବେ ସେ ବନରାଜ, ଯାଏ ରାଜନିଦ୍ରା
ସତର୍କ, କ୍ଷଣିକ, ଯେବେ ଗୃହିଁ ଦିଏ ଥରେ
ରକ୍ତାକ୍ତ ଅଳସ ନେତ୍ରେ ଅର୍ଦ୍ଧନିମୀଳିତ,
ଲୁଚନ୍ତି କେ କାହିଁ ତେବେ ଅଗ୍ରବର୍ତ୍ତୀ ଜୀବେ ।
ନାହିଁ ତାର ଛଳେ ମାତ୍ର ଭୟ ବା ଭ୍ରୂକ୍ଷେପ,
ଉଦାର 'ନିର୍ଭୀକଚେତା, ନୃପତି ଯେସନ,
ନାହିଁ ତା' ଇତରଦୃଷ୍ଟି, ଦେଖିଲେ ତା' ମୂର୍ତ୍ତି,
ପିଣ୍ଡରୁ ପରାଣ ଯାଏ ତକ୍ଷଣେ ବାହାରି ।
କାହିଁ ଅବା ଯୂଥନାଥ—ଭୀମ ଦନ୍ତାବଳ

ଶମନ୍ତେ କାନନସିନ୍ଧୁ, ମନ୍ଦସ୍ରୋତ ପ୍ରାୟ
କାହିଁ ବା ବସନ୍ତବରେ ଠେକ୍କ ତୀକ୍ଷ୍ଣ ସଠା,
ରତ ବର ଆହବରେ, ଦଶନ ଘର୍ଷଣେ
ଝଡ଼ପଡେ ଅଗ୍ନିକଣା, ଦେଖି ମାଡେ ଭୟ ।
କମ୍ପୁଛି ଭଲ୍ଲୂକ ଜ୍ୱରେ,—ତୀକ୍ଷ୍ଣଦୀର୍ଘନଖ,
କଣ୍ଠ ଡାକେ ଘଡ ଘନ, କଫରୋଗୀ ପ୍ରାୟ ।
ଭ୍ରମୁଛନ୍ତି ଗଣ୍ଡା, ଗଣ୍ଡା ଗଣ୍ଡା, ଖଣ୍ଡାଧାରୀ,
ଏହିପରି କେତେ ଜନ୍ତୁ ଭ୍ରମନ୍ତି କାନ୍ତାରେ,
କେ ପାରିବ କଳି ତାହା, କନ୍ତୁ କି ଆଶ୍ଚର୍ଯ୍ୟ,
ହେ ରଙ୍କୁ, ତୁମ୍ଭର ଏହି ପ୍ରଣୟରଙ୍କୁଣୀ
ନ ଦେଖିଲ କାହିଁ ତୁମ୍ଭ ପଙ୍କଜ ଆନନ ।
ପଗୃରିଲ ତହୁଁ ଦ୍ରୁମେ, ହେ ଲତାବଲ୍ଲଭ,
ବହି ତୁମ୍ଭେ ବଞ୍ଚିହୁଛ ପ୍ରାଣୀ, କଳେବର,
ପୁଣି ସମଦର୍ଶୀ, କର ଛେଦକକୁ ସୁଦ୍ଧା
ଛାୟାଦାନେ ତୃପ୍ତ, ତୁଷ୍ଟ, ଯାଏ ବହୁଦୂର
ଦୃଷ୍ଟି ତବ, ଘେନ ମୋର ମିନତି ଆରତ,
ହେ ପରୋପକାରବ୍ରତୀ, କୃପା-ସ୍ପର୍ଶ ଦେବ,
ମୋ କାନ୍ତ ସନ୍ଦେଶ କହି ସାର୍ଥକ ସେ ବ୍ରତ ।
ଶକ୍ତ ତ ମୋ କାନ୍ତେ ତୁମ୍ଭେ, ବନବ୍ରାହ୍ମଣ ସେ,
ନିବାସ ତାଙ୍କର ତୁମ୍ଭ ପୁଣ୍ୟ ଛାୟା ତଳେ,

ଦେଖିଥିବ କଷ୍ଟେ ତାଙ୍କୁ, କହ ଦୟା ବହ ।
ଶୁଣି ମୋ ଗୁହାରି ତରୁ, କହିଲ କି କଥା,
ଶାଖା-ହସ୍ତ ଠାରି, ତାହା ନ ପାରିଲି ବୁଝି,
ସ୍ୱଭାବେ ମୁଁ ଦେବବାଳା, ଚିର ଅମାୟିକା,
କେମନ୍ତେ ବୁଝିବି ନରପୁରର ସଙ୍କେତ,
ନରପୁର କୂଟମାୟା ଦେବେ ଅଗୋଚର ।
ଏଥିଅନ୍ତେ ଧୀର ଗିରେ ପୁଚ୍ଛିଲି କୁସୁମେ—
ଅଳିପ୍ରିୟେ, ଚିହ୍ନିଛୁ ତୁ ମୋ ହୃଦୟନାଥେ,
କସ୍ତୂରୀନାଭି ସେ, ଲାଗି ସେ କସ୍ତୂରୀଗନ୍ଧ
ତୋ ଶରୀରେ, ବଢ଼ାଇଛି ଗୌରବ ତୋହର,
କହ କାହିଁ ଛନ୍ତି ତୋର ସେ ସୌଭାଗ୍ୟଦାତା ।
ହା ଦୁର୍ଦ୍ଦୈବ, କି ଲେଖିବି ତୁମ୍ଭଙ୍କୁ ପ୍ରାଣେଶ,
ଶୁଣି ମୋ ଭାରତୀ ଭ୍ରଷ୍ଟା ଉଠିଲା କି ହସି
କରକର ହୋଇ ପତ୍ର ମରମର ଛଳେ,
ହସି ହସି ଗଲା ଗଡ଼ି, ହାସ୍ୟ ପଛେ ହାସ୍ୟ,
ତାହା ପଛେ ହାସ୍ୟ, ପୁଣି ହାସ୍ୟ, ପୁଣି ହାସ୍ୟ,
ହସିଲା ମରିବାଯାଏଁ ଏକ ନିଶ୍ୱାସରେ ।
କି ନିର୍ବାକ ବ୍ୟଙ୍ଗ, କେତେ ନିଷ୍ଠୁର ବିଦ୍ରୂପ
ଦୁଷ୍ଟାର, ସ୍ୱଭାବେ ସେ ତ ବାରବିଳାସିନୀ,
ସହଜେ ନିର୍ଲଜ୍ଜା, ତାର ହାସ୍ୟହିଁ ଜୀବିକା,

କେବେ ବାସ ବସୁବକ୍ଷେ, କେବେ ଶମ୍ଭୁଶିରେ,
କେବେ ବା ଗଣେଶପଦେ, କି ଲଜ୍ଜା ତାହାର !

ଯେଉଁ ନଷ୍ଟା ଅବିଦ୍ୟାରେ ମହାବିଦ୍ୟାବତୀ,
ଘୃଣିତ କୁସୁରୁ ପୁଣି ପାପ କୁବିଦ୍ୟାର,
କାହିଁ ଗତି ତାର, ଧିକ୍ ଧିକ୍ ତା ଜୀବନେ ।

ହୋଇ ମୁଁ ବିରକ୍ତ ତାର ହୀନ ବ୍ୟବହାରେ
ବାହୁଡ଼ି ତା' ପାଶୁ, ପୁଣି ପୁଚ୍ଛିଲି ଅନିଳେ,
ଋରୁରଥ*, ମହାସଖ୍ୟ ମହାଦାତା ତୁମ୍ଭେ,
ନ ଯାଉ ପଛକେ କେହୁ ଗନ୍ଧ ଗ୍ରହଣାର୍ଥେ

ପୁଷ୍ପପାଶେ, ବଳେ ବଳେ ନେଇ ତୁମ୍ଭେ ଗନ୍ଧ
ଦେଇ ଆସ ଗୃହେ ତାର, ଖୋଜ ଖୋଜ ତାକୁ;
ଦିଅ ମୋତେ ସ୍ୱାମିଦାନ, ଯେଣୁ ମୋ ଯାଚନ୍ତା,
ସ୍ୱାମୀ ମୋର ତୁମ୍ଭ ଦାସ, ମୁଁ ତୁମ୍ଭର ଦାସୀ,

କର ଅନୁଗ୍ରହ ଦାନେ, ସେବକ-ବତ୍ସଳ ।
ଭାଷିଲେ ଜଗତପ୍ରାଣ, ପାଗଳଣୀ ତୁହ
ପଶ୍ଚାତକେ, ବୃଥା ଖୋଜୁ ଏଣେତେଣେ କାନ୍ତେ,
ଖୋଜ ନିଜ ପ୍ରାଣ ମଧ୍ୟେ, ପାଇବୁ ନିଶ୍ଚୟ ।
କିନ୍ତୁ ହାୟ, କାହିଁ ପ୍ରାଣ, ଖୋଜିବି ତହିଁରେ,

* ମୃଗବାହନ—ବାୟୁ ।

ସେ ତ ଅଛ ତୁମ୍ଭ ପାଶେ, ନ ଆସେ ଡାକିଲେ,
ଆସ ତୁମ୍ଭେ, ଆସ ପ୍ରଭୁ, ପ୍ରାଣ ଯେନ ମୋର"।

ଦେଖିଲି ଦୁସ୍ୱପ୍ନ ଦିନେ, ହାୟ କି କହିବି,
ସକଳ ଆପଦ ତବ ଯାଉ ମୋ ଉପରେ,
କେମନ୍ତେ କହିବି ସେହି ଅମଙ୍ଗଳ କଥା,
ସ୍ମରିଲେ ତା ଏବେ ମୂର୍ଛା ଶୁଖିଯାଏ ଆତ୍ମା,
ଦେଖିଲି ସ୍ୱପନେ ଏକ ଦୁରନ୍ତ କିରାତେ
ମାନବ-ଶମନ, ଉଭି ଧନୁର୍ବାଣ କରେ,
ବାତାଘ୍ରୂ, ଗତାଘ୍ରୂ ହୋଇ ପଡ଼ିଅଛ ତୁମ୍ଭେ,
ବହୁଛି ରୁଧିରଧାରି ଅସ୍ତ୍ରକ୍ଷତ ଅଙ୍ଗୁ,
ସୁଖ-ସ୍ମିତ-ମୁଖ ତବ ହୋଇଛି ବିବର୍ଣ୍ଣ,
ଦେଖି ତାହା ପଡ଼ିଲି ମୁଁ ମୂର୍ଚ୍ଛା ଯାଇ ତହିଁ,
ତହିଁ ପରଦିନ ଦେବ ମଧ୍ୟାହ୍ନ ମାର୍ତ୍ତଣ୍ଡ
ଛୁଆଇଁ ସୁବର୍ଣ୍ଣକର ଉଠାଇଲେ ମୋତେ ।
ବ୍ୟାକୁଳ ମୁଁ ତୁମ୍ଭପାଇଁ ସତତ ହେ ରାମ—
କାନନ-ଅଯୋଧ୍ୟାପୁର-ନେତ୍ର-ଅଭିରାମ,
ପ୍ରଦାନ ଦର୍ଶନ, ପ୍ରଭୁ, ଚିରରାମ ପ୍ରାଣା—
ଅଗର୍ଭଜାଙ୍କ*, ଏ ଦାସୀଙ୍କ କର ଭାଗ୍ୟବତୀ ।



*ସୀତା ।

## ସପ୍ତମ ସର୍ଗ ।



( କୋକିଳ ପ୍ରତି ରସାଳକଳିକା )

ଦର୍ଶନପ୍ରାର୍ଥିନୀ ଅଳି, ପିକକୁଳପତି,
ତୁମ୍ଭର ଏ ଦାସୀ—ଚିର ସମାଧିନିମଗ୍ନ—
ଯୋଗିବର-ସହକାର-ବାଳିକା-କଳିକା ।
ପେଷିଲି ପ୍ରଣୟପତ୍ର, ତବ ଦର୍ଶନର
ଅଗ୍ରିମ ମୂଲ୍ୟ ଏ, ମଧୁବନ୍ଧୁ, ଜାଣେ ମୁହିଁ,
ଉତ୍କୃଷ୍ଟ ଦ୍ରବ୍ୟର ମୂଲ୍ୟ ହୁଏ ସମଧିକ,
ଜାଣେ ସୁଦ୍ଧା ମୋର ଏହ କ୍ଷୁଦ୍ର ଲିପିମୂଲ୍ୟ
ଅତି ଊଣା, ମୋ ବାଞ୍ଛିତ ଦ୍ରବ୍ୟ ତୁଳନାରେ,
ହିମାଳୟ ତୁଳନାରେ ରେଣୁକଣା ଯଥା,
କିନ୍ତୁ ପ୍ରଣୟ ତ ନଟେ ସ୍ୱର୍ଗୀୟ ସମ୍ପଦ,
ତାହାର ପରଶ ହେତୁ, ମୋର ଏ ବିଶ୍ୱାସ—
ହେବ ଏହା ତବ ପାଶେ ଅଦ୍ଭୁତ, ଗୃହୀତ ।
ହେ ଦେବତା, ତୁମ୍ଭ ବିନା ମୋ ହୃଦ-ମନ୍ଦିର
ହୋଇଛି ଦେବତାଶୂନ୍ୟ, ନ ଜାଣ କି ନାଥ,
ତୁମ୍ଭେ ଯେ ମୋ ମୃତ ପ୍ରାଣେ ଅମୃତର ଦାନ ।
ପକ୍ଷୀ ତୁମ୍ଭେ, ଏଥରକ ପାଇଲେ ତୁମ୍ଭଙ୍କୁ

ରଖିବ ମୁଁ ପକ୍ଷୀ ଭାବେ ହୃଦୟ-ପିଞ୍ଜରେ
ବନ୍ଧ କରି ଚିରକାଳ, ଭୁଞ୍ଜାଇବ ନିତ
ସୁପକ୍ୱ ପ୍ରଣୟ-ଫଳ, ଅମୃତୁଁ ମଧୁର,
ପିଆଇବ ସୁଶୀତଳ ଭକ୍ତି-ଗଙ୍ଗାଜଳ ।
ବସିଛ ମୁଁ—ସୁକୁନ୍ତଳା, ଚୂତର୍ଷିଦୁହିତା,
ତୁମ୍ଭ ପ୍ରତୀକ୍ଷାରେ ବନେ, ଶକୁନ୍ତଳା ପ୍ରାୟ—
ଧରାଧନ୍ୟା, ବରବର୍ଣ୍ଣା, କନ୍ୱର୍ଷି-କନ୍ୟକା;
ଅଛନ୍ତି ସଙ୍ଗରେ ପ୍ରିୟ ସହଚରୀଦ୍ୱୟ—
ପ୍ରିୟମ୍ବଦା—ମଧୁକରୀ*, ପୁଣି ହରିଦ୍ରାଙ୍ଗୀ†
ଚିର ଅନସୂୟା, ବେନି ପ୍ରାଣାଧିକା ମୋର,
ଆସ ଏବେ ତୁମ୍ଭେ ହରି, ଦୁଷ୍ମନ୍ତ ପରାୟେ
ଅମୂଲ୍ୟ ଭୂଷଣ-ମଣି ଭାରତ ମାତାର,
ହେ ଗନ୍ଧର୍ବବର, କର ପରିଗ୍ରହ ମୋତେ
ଗାନ୍ଧର୍ବ ବିବାହେ, ତବ କୌଳିକ ନିୟମେ ।
ନୁହ ତୁମ୍ଭେ ମର୍ତ୍ତ୍ୟବାସୀ, ଦେବୋଦ୍ୟାନ ଭିନ୍ନ
ସମ୍ଭବେ କି ଦେବମୂର୍ତ୍ତି ଅଦେବ ରାଜ୍ୟରେ,
ହେ ବସନ୍ତପ୍ରିୟ, ଆସି ବସନ୍ତ ସହିତେ
ଚଳିଯାଅ ତାହା ପଛେ,—ଅଜ୍ଞାତପାବନ
କେବଣ ସୁନ୍ଦର ରାଜ୍ୟେ, ସେ ରାଜ୍ୟ କି ସ୍ୱର୍ଗ,

---

*ଭ୍ରମରୀ ।　　†ହଳଦୀବସନ୍ତ ।

ସ୍ନେହ ପ୍ରୀତି ଶ୍ରଦ୍ଧା ମୈତ୍ରୀ ସକଳ ସୁନ୍ଦର ?
ଜଳ ସ୍ଥଳ ଅନ୍ତରୀକ୍ଷ ସକଳ ସୁନ୍ଦର ?
ନାଗରିକ ହୃଦ୍, ଆତ୍ମା ସକଳ ମଧୁର ?
ରାଜା ପ୍ରାୟ ହୋଇ ତୁମ୍ଭେ ସୁଖରେ କାତର,
ଅସି ବନଭ୍ରମଣରେ ପଥ ହୁଡ଼ି ଅବା
ଅତର୍କିତେ ଏ ପ୍ରବାସେ ହୁଅ ଉପସ୍ଥିତ,
ପାରନ୍ତି ସକଳେ ହୋଇ ଦୁଃଖରେ କାତର,
ସୁଖେ ଯେ କାତର ହୁଏ, ସୁଖୀ ସେ ଜଗତେ ।
ତୁମ୍ଭ ପଥଭ୍ରମ, ହୁଏ ମୋ ପକ୍ଷରେ ଶୁଭ,
ତେଣୁ ମୁଁ ତୁମ୍ଭଙ୍କୁ ଲଭେଁ, କିନ୍ତୁ କି କହିବ,
ହାଟ୍ୟ ତ ହାବେଲୀ ବାଣ, ଉଠିବାବେଳେ ସେ
ଉଠେ ଅନ୍ତରୀକ୍ଷବକ୍ଷ ବିଦାରି ପ୍ରଖରେ,
ପତନ ସମୟେ ତଥା କରି ଶତଛିନ୍ନ
ବାୟୁ-ଜାଲ, ପଡ଼ି ତଳେ ଦ୍ୱିଗୁଣ ବଳରେ
ହୋଇଯାଏ ବିଚୂର୍ଣ୍ଣିତ ଛଳ ଛଳ ହୋଇ,
ପାଇ ମୁଁ ତୁମ୍ଭଙ୍କୁ ନାଥ, ରଙ୍କନିଧିରୂପେ,
ଦ୍ୱିଦିନେ ହରାଇ ବସେ ଦୁର୍ଦ୍ଦୈବବିଧାନେ ।
ହାୟ, ସେହି ଭୂତସ୍ମୃତି, ନ ହୁଏ ସମ୍ଭାଳି,
ଫେରୁଛି ସେ ହୃଦୟରେ କୋଟି ବଜ୍ର ଭେଦ ।
କି ନିଷ୍ଠୁର ତୁମ୍ଭେ, ପ୍ରିୟ, ଅଛ ହୃଦୟେ,

ମାତ୍ର ଆସୁ ନାହିଁ କିଆଁ ସମ୍ମୁଖକୁ ଥରେ ।
କେତେ ବ୍ୟଥା କାରାରୁଦ୍ଧ ହୋଇଛି ହୃଦୟେ,
କେତେ ଯେ ହେଉଛି ଦଗ୍ଧ ଏ ପାଗଳ ପ୍ରାଣ,
କହିବ କା' ଆଗେ ତାହା, ଶୁଣିବ ବା କିଏ,
ତୁମ୍ଭ ବିନା ଅଭାଗୀର କେ ଅଛି ସମ୍ବଳ ।
ନାହିଁ ଯେଉଁ ଦେଶେ ଚିର ବସନ୍ତ ସୁଷମା,
ନାହିଁ ଚିର ମଳୟର ଅମୃତ ହିଲ୍ଲୋଳ,
ଯା ସଂସର୍ଗେ ପରିଣତ ତରୁଏ ଚନ୍ଦନେ,
ପରଶ-ପରଶେ ଯଥା ଲୌହ ବାରବାଣୀ,
ନାହିଁ ଯହିଁ ପ୍ରତିଭାର ଆଦର ଗୌରବ,
ନାହିଁ ସତ୍ୟ ପୂଜା, ନାହିଁ ସ୍ୱାର୍ଥ ବଳିଦାନ,
ଜାଣେ ମୁଁ ସେ ଦେଶେ ନୁହେ ତବ ଚିରବାସ,
ତଥାପି ଯା ଥରେ ଥରେ ପ୍ରଦାନ ଦର୍ଶନ,
ସେ ତୁମ୍ଭର କୃପା—ମୋର ପ୍ରାକ୍ତନର ବର ।
କଳକଣ୍ଠ, ମୌନ ତୁମ୍ଭେ ଜମ୍ବୁରସ ପାନେ,
ରୁଦ୍ଧକଣ୍ଠ, ରୁଦ୍ଧକଣ୍ଠ ଦଧିପାନେ ଯଥା,
ଆସ ନାଥ, ପିଅ ମୋର ପୁଣ୍ୟାମୃତ ରସ,
ଜଡ଼ତା-ବ୍ୟାଧିର ତାହା ଅବ୍ୟର୍ଥ ଔଷଧ,
ତକ୍ଷଣେ ଫିଟିବ କଣ୍ଠ, ବଚ ପାନେ ଯଥା
ଶୁକକଣ୍ଠ—ଝୁଣାଗନ୍ଧ-ଆଘ୍ରାଣେ ନୀରବ ।

ବଙ୍ଗେ ମଧୁଋତୁ ଏବେ ବସୁନ୍ଧରା ସ୍ୱର୍ଗେ,
ପଦ୍ମଗନ୍ଧ ମିଶାଇଲାଣି ମଳୟ ନିଶ୍ୱାସେ
କଳର ନିଶ୍ୱାସ ଧାରା—ସ୍ନିଗ୍ଧ ସୁରଭିତ,
ଫୁଟିଲାଣି ବନେ ଫୁଲ, ଅହା ତନୁ ତାର,
ହୋଇଛି ରଚିତ ଯେସ୍ନେ ଚନ୍ଦ୍ରିକା-ସୁହାସେ ।
ଚୌଦିଗ ମଧୁର ଏବେ, ମଧୁର ଯେସନ
ସୁଖ-ସ୍ୱପ୍ନ-ସ୍ମୃତି, କିମ୍ବା ମାତୃଉରସ୍ଥାର,
ଯାଉଛି ବରଷି କେତେ ମଧୁ ପରେ ମଧୁ—
କୋକିଳରେ ଶୋଭା, ମାତ୍ର ପିକ, ତୁମ୍ଭ ବିନା
ସେ ଶୋଭା ଅଶୋଭା, ପ୍ରାଣହୀନ, ଆତ୍ମାଶୂନ୍ୟ,
ପ୍ରତିମାବିହୀନେ ଯଥା ମଣିମୟ ମେଢ଼ ।
ମାନୁ ନାହିଁ ଧରଣୀଙ୍କ ସେ ନୀରସ ଶୋଭା,
ନ ମାନେ ଅଦନ ଫୁଲ ପାଦପେ ଯେସନ ।

ଶୁଣେ ବହୁ ପକ୍ଷିସ୍ୱର, ମାତ୍ର ପ୍ରାଣେଶ୍ୱର,
ତାହା ଖାଲି କର୍ଣ୍ଣଦାୟୀ କ୍ଲେଶ, ନାହିଁ ତହିଁ
ମଧୁରତା, କୋମଳତା, ମୋହମାଦକତା
ତୁମ୍ଭ ସ୍ୱର ଭଳି, କିମ୍ବା ନାହିଁ ଦେବଭାବ
ଅଥବା କମନୀୟତା, ଶୁଶ୍ରୂଷା-ଆବେଗ ।
କି ସୁନ୍ଦର ସ୍ୱର ତବ ହେ ଗାୟକରାଜ,
ଅଛି ତହିଁ ଏକାଧାରେ ସହସ୍ର ବୀଣାର

ମଧୁର ଝଙ୍କାର, ଦେବ, ଶୁଣିଲେ ସେ ସ୍ୱର
ହୃଦୟୁ ଅସାଢ଼ ଯନ୍ତ୍ର ହୁଏ ସଞ୍ଚାଳିତ
ସବେଗେ ସଶବ୍ଦେ, କେଡ଼େ ମଧୁର ପୁଣି ସେ,
ନାହିଁ ସେ ମାଧୁରୀ, ଆହା, ବିଶୁଦ୍ଧ ଗୋଲୁପ୍ପେ,
କିମ୍ବା କାବ୍ୟରସେ, ଅବା ମାଧୁର୍ଯ୍ୟ ଶବ୍ଦରେ,
ଏ ଭଳି ମଧୁର ସ୍ୱର ଥିଲେ ଲିପିସ୍ତୂପେ,
ପ୍ରତେ ହୁଏ ଥାନ୍ତା ନାହିଁ ସୁଧାର ଆଦର ।
"ଗନ୍ଧର୍ବ" ଅଭିଧା ତବ ସାର୍ଥ ହେ ଗାୟକ
ସ୍ୱରଶିଳ୍ପୀ, ସ୍ୱର ତବ ଉପମାରେ ଗଢ଼ା,
ମଧୁର-ରଚନା, ଛନ୍ଦ, ମଧୁର ମୂର୍ଚ୍ଛନା—
ହେ କାନନ-କବିବର, ସଙ୍ଗୀତେ ତୁମ୍ଭର ।
ନାହିଁ ତହିଁ ଅଳଙ୍କାର ପାଣ୍ଡିତ୍ୟଚ୍ଛଟା,
ନାହିଁ ଶବ୍ଦ ଆଡ଼ମ୍ବର, ଭାଷାର ଗୂଢ଼ତା,
କିମ୍ବା ଅର୍ଥଜଟିଳତା—ଶିରେବ୍ୟଥାମୟୀ,
ଅଛି ଯାହା ଶୁଣିବ କି, ଶୁଣ, ଅଛି ତହିଁ—
ସହଜ ସରଳ ଭାବ, ଅମୂଲ୍ୟ ମାଧୁରୀ
ସଙ୍ଗୀବା ମୋହିନୀ ଶକ୍ତି, ଆଉ ଯାହା ଅଛି,
ନାହିଁ ତା'କାହିଁରେ, ସେ ଯେ କେବଣ ପଦାର୍ଥ,
କହିବ କେମନ୍ତେ ତାହା, ନାହିଁ ତାର ସଂଜ୍ଞା—
ସଂଜ୍ଞାକୋଷେ, ଅସାଧ୍ୟ ସେ ଶବ୍ଦ ରଚକର ।

ହୁଏ ତହିଁ ପ୍ରାଣ ହୃଷ୍ଟ, ବହେ ହୃଦ-ବନେ
ଉଚ୍ଚାଟ-ଝଟିକା, ପୁଣି ଜାତ ହୁଏ ଦେହେ
ନିଷ୍କମ୍ପ ସ୍ପନ୍ଦନ, ଦେବ, କି ପଦାର୍ଥ ତାହା
ବୁଝି ଏତେକରୁ ତୁମ୍ଭେ—ଅନନ୍ତ ଶାବ୍ଦିକ ।
ସ୍ୱର ନୁହେ ଛଳେ ହେଲେ ସେ ଗୀତ ପଦରୁ
ବିଶ୍ୱର ସଙ୍ଗୀତ ଶାସ୍ତ୍ର—ବିରାଟ, ଅକଳ,
ଗୋଟିଏ ବର୍ଣ୍ଣର ମାତ୍ର ମାଧୁରୀ ତାହାର
ନାହିଁ ନାହିଁ କୋଟି କୋଟି ସୁଧା-ପାରାବାରେ,
ସେ ଗୀତର ଉଚ୍ଚାରଣ-ତ୍ରୁଟି-ବିଚ୍ୟୁତିରୁ
ଝରେ ସ୍ୱଚ୍ଛ ସୁଧା-ଉତ୍ସ, ସହସ୍ର ଧାରରେ ।
କେତେ ଥର ଇଚ୍ଛା କରେଁ ପଶୁରିବ ବୋଲି,
ମାତ୍ର ପୋଡ଼ା ଭୁଲି ମନ ଭୁଲିଯାଏ ତାହା,
ହେ ପ୍ରାଣେଶ, କିପାଁ କହ "ତୁ" "ତୁ" ବୋଲି ସଦା,
ଜଗତେ କି ସକଳ 'ତୁ' ତୁମ୍ଭର ବିଚାରେ ?
ନାହିଁ ନାହିଁ, ଅଛି ସୁ ତୁ ଏକାଧାରେ,
ଯେଉଁ ଅଗ୍ନି ଦହେ ଗୃହ, ସେହି ଅଗ୍ନି ପୁଣି ।
କରେ ଗୃହ ଆଲୋକିତ—ପାକ କରେ ଅନ୍ନ;
ଜଳର ଜୀବନ ନାମ, ରଖେ ସେ ଜୀବନ,
ବରଞ୍ଚ ମରଣେ ଜୀବେ ସେହି ଜଳେ ବୁଡ଼ି;
ସୁଖାଦ୍ୟରେ ପରିପୁଷ୍ଟ ହୁଏ କଳେବର,

ମାତ୍ର ମାତ୍ରାଧିକ୍ୟେ ଅର୍ଣେ ଅଙ୍ଗାଙ୍ଗୀଭେଦେ ସେ;
ଚମ୍ପକେ ସୁଗନ୍ଧ ସହ କବସେ ତିକ୍ତତା,
ଫଣୀ—ମଣିଚୂଡ଼, କିନ୍ତୁ ତୀବ୍ର ବିଷାକର ।
'ଲୁ' ସୁଦ୍ଧା ତ ଆବଶ୍ୟକ ହସାରବିଧାନେ,
'ଲୁ' ନ ଥିଲେ ଥାଆନ୍ତା କି 'ସୁ'ର ଗୌରବ ?
'ସୁ' ହେଉ 'ଲୁ' ହେଉ ଅବା, ଉଭେ କ୍ଷଣସ୍ଥାୟୀ,
କ୍ଷଣସ୍ଥାୟୀ ଯୁଦ୍ଧରତ ଯୋଦ୍ଧାଙ୍କର ଯଥା,
କିମ୍ବା ଯଥା ଜ୍ଞାନ-ହୃଦେ ସନ୍ଦେହର ଛାୟା,
କ୍ଷଣସ୍ଥାୟୀ ଭବ, ହାୟ, କ୍ଷଣସ୍ଥାୟୀ ମଧ୍ୟେ
କି ଫଳ ବା ସୁ ଲୁ ବାଛି, ବିଫଳ ସେ ଚର୍ଚ୍ଚା ।
ଆଉ ଏକ କଥା ହେଳ ହୃଏଁ ମୁଁ ତାଠଙ୍କା,
ରଖ ନାହିଁ ନାଥ, ତୁମ୍ଭେ ହ୍ରସ୍ୱଦୀର୍ଘ ଭେଦ—
ବ୍ୟାକରଣ ଶାସ୍ତ୍ରସିଦ୍ଧ, ବାକ୍ୟ ଉଚ୍ଚାରଣେ,
ଦୀର୍ଘ ଉଚ୍ଚାରଣ କର—ହ୍ରସ୍ୱ 'ଲୁ' ବର୍ଣ୍ଣର ।
ବୁଝିଲି ବୁଝିଲି, ତୁମ୍ଭେ ମହାଭାଷାବିଦ,
ହ୍ରସ୍ୱ ଦୀର୍ଘ ଭେଦରକ୍ଷା ଉଚିତ ସର୍ବଥା,
ମାତ୍ର ତାହା ଅମୁନ୍ଦର କଥିତ ଭାଷାରେ,
ଭାଷା—ବାଷ୍ପକନ୍ୟା, ଅତଃ ଶୂନ୍ୟକଳେବରା,
ବସ୍ତୁତ ତାହାର ମାତ୍ର ଅନନ୍ତ ଅପାର,
ଅଗାଧ ମହିମା ତାର ପବମାନ ପ୍ରାୟ,

କେ ରୋଧିବ ଅଣୁଗତି ଗତି, କେ ରଖିବ
ଅସୀମେ ସସୀମ କରି, ଜାଣି ଏହା ତୁମ୍ଭେ,
ପ୍ରଦାନଛ ତାକୁ ଚିରମୁକ୍ତ ସ୍ୱାଧୀନତା,
ଭ୍ରମି ସେ ବିମୁକ୍ତ ସ୍ଥାନେ, ସେବି ମୁକ୍ତ ବାୟୁ,
ହୋଇଅଛି ପରିପୁଷ୍ଟ, ପ୍ରବଳ, କର୍ମିଷ୍ଠ ।
ବ୍ୟାକରଣ-ଲୌହଗୃପେ ଦୃଢ଼େ ଗୃପି ତାକୁ
କରିବାକୁ ବିକଳାଙ୍ଗ, ନୁହେଁ ତୁମ୍ଭ ମତ,
ସ୍ୱନ୍ଦଶୀ ପ୍ରସୂତ ଆଣେ କଷ୍ଟୁର ଚୈନିକେ (୧)
କାଟିଣ ବାଳିକା ପଦ, ଅର୍ପି ତାକୁ ହାୟ
ପ୍ରାଣାନ୍ତକ କଷ୍ଟ, ଶେଷେ ଗତୁ ଗତ୍ରୁ ଦଅ,
ପକାନ୍ତ୍ର ବାନର ଗଢ଼ି, ତହୁଁ ଅଲଗିଲା
ଅଜନ୍ମ ଅପୂର୍ଣ୍ଣ ପାଦେ ଭୁଞ୍ଜେ ଶୋକସୁଖ ।
ଯେ ଶୋକ ଯନ୍ତ୍ରଣାମୟୀ, କୁହାର ତା ପଦେ ।
ପିକ, ତୁମ୍ଭେ ଜାତମ୍ବୁର, ଜନ୍ମି ମାତୃଗୃହେ,
ବାୟସୀ କୋଳରେ ହୋଇ ଲାଳିତ ପାଳିତ,
ସ୍ୱଗୋତ୍ର ସ୍ୱସ୍ୱର ଶେଷେ ମିଶ ସ୍ୱସମାଜେ,
ଦ୍ୱାପରେ ଯେସନ କୃଷ୍ଣ— ବୃଷ୍ଣିକୁଳୋଷ୍ଣିଶ,
ଚନ୍ଦୁଳଚନ୍ଦ୍ରକଚୂଳ ଗୋକୁଳଚନ୍ଦ୍ରମା,
ଜନ୍ମି ବସୁଦେବ ଗୃହେ, ବଢ଼ି ନନ୍ଦ ଗୃହେ

(୧) ଚୀନବାସୀ ।

ଲଗାଇ ଅଚ୍ଛେଦ୍ୟମାୟାଁ ଗୋପଗୋପୀପ୍ରାଣେ,
ପ୍ରକାଶି ଅନନ୍ତ ଲୀଳା, ହାୟ ଲୀଳାମୟ,
ଗମିଲେ ମଥୁରାପୁରରେ ଅକ୍ରୂର ସହିତେ,
କରି ନିରାନନ୍ଦ ନନ୍ଦଗୃହ, ଲଦ ଦେଇ
ଶୋକ-ଶୈଳ ଯଶସ୍ୱିନୀ ଯଶୋଦାହୃଦୟେ ।
ରାଧାପ୍ରାଣ ତୀବ୍ର ବାଧା କହିଲେ ନ ସରେ ।
ଆସୁଅଛି ଦୋଳପର୍ବ, ଆସ ନାଥ ତ୍ୱରା,
ଖେଳିବା ଅବିର ଖେଳ ରାଧାକୃଷ୍ଣ ପ୍ରାୟ,
ରଚିଛି ମୁଁ କୁଞ୍ଜକୁଟି, ବସ ଆସି ତହିଁ,
ଦୋଳାଇବ ସମୀରଣ ମଧୁରେ ମଧୁରେ,
ଜ୍ୟୋସ୍ନାକୁ କରିବା ଫଗୁ, ହେବା ଫିଙ୍ଗାଫିଙ୍ଗି,
ଧରି ତୁମ୍ଭେ ଜ୍ୟୋସ୍ନାମୁଠେ, ବୋଳିଦେବ ଆଣି
ସୁଅଗେ ମୋ ମୁଖେ, ହସି ହସି ତହୁଁ ମୁହିଁ
ନେବି ତାର ପ୍ରତିଶୋଧ, ଫିଙ୍ଗି ନେତ୍ରେ ଫଗୁ
ଅଚ୍ଛାଦିବି ପଦ୍ମ-କରେ ନିଜ ନେତ୍ର ପୁଣି ।
ମତ୍ତ ହେବା ଇଚ୍ଛାସୁଖେ ଆନନ୍ଦ ଉତ୍ସବେ ।
ପ୍ରାଣକାନ୍ତ, କି ସୁନ୍ଦର ଗୁରୁକାନ୍ତି ତବ,
ନୀଳକାନ୍ତେ ଗଢ଼ା, ନେତ୍ର ପଦ୍ମରାଗନିଭ,
କହେ ସେହୁ କେତେ ନବଭାଷା—ସୁଧାମୟୀ
ମୌନଙ୍ଗିରେ, ଗାଏ ପୁଣି ନୀରବେ ସେ କେତେ

ପ୍ରାଣର କବିତା ମୋର—ବସନ୍ତ ସ୍ୱଗରେ ।
ବହେ ତାର ଅନ୍ତରାଳେ ସ୍ନେହ-ମନ୍ଦାକିନୀ
ପ୍ରଣୟ-ଯମୁନା, ପୁଣି ଶ୍ରଦ୍ଧା-ସରସ୍ୱତୀ,
ପୁଣ୍ୟତୀର୍ଥ ମୋ ପକ୍ଷେ ତା, ତ୍ରିବେଣୀସଙ୍ଗମ,
ସ୍ନାନି ତହିଁ ନେତ୍ର ହୁଏ ପବିତ୍ର, ସାର୍ଥକ ।
କି ସୁନ୍ଦର ଲାସ୍ୟ ହାସ୍ୟ ସୁନ୍ଦର ବଦନେ,
ପିଏଁ ସେହି ହାସ୍ୟ-ସୁଧା ନେତ୍ର-ଭୃଙ୍ଗେ ମୁହିଁ,
ବଡ଼ ଦୁଷ୍ଟା କୁଜ୍‌ଝଟିକା, ପରଶ୍ରୀକାତରା,
ବେଳେ ବେଳେ ଆଚ୍ଛାଦେ ସେ ସେ ଶୋଭା-ସମ୍ପଦେ
ସାଧେ ମୋ ସହିତେ ବାଦ, ନିରର୍ଥକ ଦାଉ,
ଦୁର୍ଜନ ସ୍ୱଭାବ—କରେ ବଳେ ପଣି କଳି ।
କେତେ ବ୍ୟଥା କେତେ ବ୍ୟଙ୍ଗ ସହେ ଏ ପରାଣ
ମୋର, ଶୁଣିଲେ ତା' ତୁମ୍ଭେ, ପାରିବ କି ପ୍ରଭୁ
ଧୈର୍ଯ୍ୟ ଧରି, ଯେଣୁ ତୁମ୍ଭେ ମୋ ଦୁଃଖରେ ଦୁଃଖୀ ।
କୁସୁମ-ସୁରଭି-ସ୍ନାତ କାନନେ ନିବସି
ସମୀରଣ, ବାଇ ମୁକ୍ତଛିଦ୍ର ବଂଶ-ବଂଶୀ
ଚମକାଏ ହିଆ ମୋର, ତହିଁ ମଧୁକଂଠି
କହେ ଅସି କାନେ ତବ ଆଗମନବାର୍ତ୍ତା,
କିନ୍ତୁ ନାଥ, ସବୁ ମିଥ୍ୟା, ସବୁ ପ୍ରତାରଣା,
ସେ ସ୍ୱର ତ ନୁହେ କେବେ ତବ ସ୍ୱର ଭଳି,

ହୁଏ କି ହେ ଉଚ୍ଚାରିତ ଚଣ୍ଡାଲ ମୁଖରେ
ପବିତ୍ର ସଂସ୍କୃତ ଶ୍ଳୋକ, ଅମର-ଗୌରବ ।
ଆଶା ଆସି ଗଢ଼ିଦିଏ ତହୁଁ ଅଛ ଖରେ
କଳ୍ପନାର ସିଂହାସନ—ବୈଫଲ୍ୟ-ଶ୍ମଶାନେ,
କିନ୍ତୁ ବନ୍ଧୁ, କି କହିବ, ନ ପୂରୁଁ ମୁହୂର୍ତ୍ତ,
ନୈରାଶ୍ୟ ଆଘାତେ ତାହା ହୁଏ ଧୂଳିସାତ ।

ମୋହର ସମ୍ପଦ ଆଶା, ନାଶେ ଶେଷେ ମୋତେ,
ବନ୍ୟାବତୀ ତରଙ୍ଗିଣୀ ନିଜ ସମ୍ପଦରେ
ନିଜେ ମଗ୍ନ ହୋଇ ସିନା ହରାଏ ନିଜକୁ ।
କି କରିବ, ଅବଳା ମୁଁ, ଅସ୍ତ୍ର ମୋର ଅଶ୍ରୁ,
ଅକ୍ଷମ ସେ ଶତ୍ରୁ ସଙ୍ଗେ ଶତ୍ରୁତା ସାଧନେ,
ନୀରବେ ସକଳ ସହେଁ କପାଳେ ଆଦର ।
ହସିବ ଏ କଥା ଶୁଣି ତୁମ୍ଭେ ପ୍ରାଣନାଥ,
ମଣିବ ବାତୁଳୀ ମୋତେ, କିନ୍ତୁ କି କରିବ,

କରିଅଛୁ ଆଶା ମୋତେ ଜ୍ଞାନପାଗଳିନୀ,
ଆଶା ଯାର କେବେ ହେଲେ ହୁଏ ନାହିଁ ପୂର୍ଣ୍ଣ,
ସ୍ୱଭବେ ପାଗଳ ସେହୁ, ଅବର ଯାହାର
ପୂର୍ଣ୍ଣ ହୁଏ ଅଳ୍ପ ଆଶା, ଅପୂର୍ଣ୍ଣ ଅଧିକ,
ତତୋଽଧିକ ପାଗଳ ସେ, ବଡ଼ ହତଭାଗ୍ୟ,
ଅନୁକ୍ଷଣ ପୂର୍ଣ୍ଣ ହୁଏ ଆଶାରାଶି ଯାର,

ତାଠାରୁ ପାଗଳ ବଳି ନାହିଁ ଏ ପ୍ରପଞ୍ଚେ,
ଏହି ତିନି ପାଗଳରେ ପୂର୍ଣ୍ଣ ଏ ଧରଣୀ ।
ତୁମ୍ଭର ପ୍ରଣୟ-ସ୍ରୋତ କରିଛି ପାଗଳ,
ତା ସଙ୍ଗେ ମିଶିଛି ଆଶା, ଉଚ୍ଚାଟ ଆକାଂକ୍ଷା,
ଗୋଟିକୁ ତ ବଳ ନାହିଁ, ତିନି ଶତ୍ରୁ ମୋର,
"ଏକ ରାମେ ରକ୍ଷା ନାହିଁ, ଲକ୍ଷ୍ମଣ ଦୋସର,"
କାହାକୁ ମୁଁ ସମ୍ଭାଳିବି କ୍ଷୁଦ୍ରପ୍ରାଣା ନାରୀ,
ଅନାୟତ୍ତେ ତାଙ୍କର ମୁଁ ହୋଇଛି ପାରିଧି ।
ଏତିକି ଯଥେଷ୍ଟ, ପ୍ରଭୁ, କି କାର୍ଯ୍ୟ ବାହୁଲ୍ୟେ,
ଜାଣିବ ମୋ ଦୁଃଖ ତୁମ୍ଭେ, ଯେଣୁ ବେନି ହୃଦ
ଗଢ଼ା ଏକ ଉପାଦାନେ, ତେଣୁ ମୋ ଯାତନା
ହେବ ହେ ବିମ୍ବିତ ତବ ହୃଦୟ-ଦର୍ପଣେ ।
ବସନ୍ତ ସୈରନ୍ଧ୍ରୀ ତେଜି ପ୍ରକାଶ୍ୟରେ ଏବେ
କରୁଅଛି ରାଜପଣ ଦେବ ବିକ୍ରମରେ
ସୃଷ୍ଟି-ରାଜ୍ୟେ, ମଣ୍ଡିଲଣି ରାଜଧାନୀ ତାର
ଅନନ୍ତ ବିଭବେ, ବର୍ଷେ ଯହିଁ ଦେଖ ତହିଁ
ବିଭବ ବିଭବ ପରେ, ଅଜସ୍ରଧାରରେ ।
ଲାଗିଅଛି ସୁଷମାର କୋଟି ମହୋତ୍ସବ—
ଚାରିଦିଗେ, ଚାରିକୋଣେ, ଉର୍ଦ୍ଧ୍ୱେ ଅଧୋଦେଶେ,
ଖେଳୁଛି ସୁଷମା କାହିଁ, ନାଚୁଛି ବା କାହିଁ,

କାହିଁ ବା ହସୁଛ ବସି ମଧୁରେ ମଧୁରେ,
ଆସ ନାଥ ଯୋଗ ଦେବା ଦୁହେଁ ସେ ଉତ୍ସବେ
ହିମ-ଦଗ୍ଧା କମଳିନୀ, ବସନ୍ତ ଦର୍ଶନେ—
ଉଠୁଛି ଅଙ୍କୁରି ସତେ ସରୋବର-ଲକ୍ଷ୍ମୀ,
ମୋ ପ୍ରାଣ ବସନ୍ତ ତୁମ୍ଭେ, ବିଜେ ହୁଅ ଥରେ,
ହେରିଣି ତୁମ୍ଭଙ୍କୁ, ନାଥ, ଦଗ୍ଧପ୍ରାଣ ମୋର
ଉଠିବ କଞ୍ଚେଇ ତଥା, ଧରି ଏହି ଆଶା,
ପ୍ରେରିଲି ଏ କ୍ଷୁଦ୍ର ପତ୍ର ଛାମୁରେ ତୁମ୍ଭର,
ନ ଧରିବ ଲିପିଦୋଷ—ଅଜ୍ଞା ଅବଳାର,
ଅଯୋଗ୍ୟ, ହୃଦୟହୀନ ସମାଲୋଚୀ ପ୍ରାୟ,
ବିଡ଼ାଲଧର୍ମୀ ସେ, ଖୋଜେ ଆମିଷର ଗନ୍ଧ,
ମାନ୍ଧ କେବେ ପଶେ ନାହିଁ ଶର୍କରା ସମୀପେ ।
ଆସ ନାଥ, ଆସ ବେଗେ, ଘେନ ମୋ ମିନତି,
ଆନନ୍ଦ-ମିଳନାଶ୍ରୁରେ ଧୋଇ ଦେବି ପାଦ ।

ସମାପ୍ତ ।



Printed by. V. Kar. The U. S. Press, Cuttack,

# ଶୁଦ୍ଧିପତ୍ର ।



| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୧୪ | । | — |
| ୫ | ୯ | ରଶିନାଥ | ରଶ୍ମିନାଥ |
| ୫ | ୧୬ | । | , |
| ୫ | ୧୭ | ? | । |
| ୬ | ୧୮ | ଉପସର | ଉପସ୍ବର |
| ୮ | ୧୬ | ଦେଖି | ଦେଖେ |
| ୧୦ | ୧୪ | ତହିଁ | ତହୁଁ |
| ୧୦ | ୧୬ | ନବୋଧ | ନବୋଧ |
| ୧୧ | ୩ | ସୋଭି | ଶୋଭି |
| ୧୮ | ୬ | ସମୀପରେ | ସମୀରେ |
| ୪୦ | ୧୯ | ଭକ୍ତଭୋଗୀ | ଭୁକ୍ତଭୋଗୀ |
| ୫୮ | ୧୭ | କହହ | କହନ୍ତ |
| ୬୩ | ୧୦ | ପ୍ରଣାଧିକ | ପ୍ରାଣାଧିକ |
| ୬୫ | ୧୭ | ଲମ୍ବାଲ | ଲମ୍ବାଇ |
| ୬୫ | ୨୦ | (୨) | * |
| ୭୧ | ୨୦ | ସମ୍ରାଜ୍ଞୀ | ସାମ୍ରାଜ୍ଞୀ |
| ୭୨ | ୫ | ରସିକସେଖର | ରସିକଶେଖର |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭୩ | ୭ | ଶୁକ୍ଲରଥେ | ଶୁକ୍ଳରଥେ |
| ୮୧ | ୧୩ | ବନସ୍ପତ | ବନସ୍ପତ |
| ୯୫ | ୬ | କ୍ଳୁଦମ୍ବ | ହ୍ଳୁଦମ୍ବ |
| ୯୬ | ୧୫ | ଅଛି | ଅଛି ତହ୍ନ |
| ୯୬ | ୧୬ | । | , |
| ୯୭ | ୫ | ଗୌରବ | ସ୍ୱଗୌରବ |



